# ବିଧୁଭୂଷଣ ଦାସ ଶ୍ରଦ୍ଧାଞ୍ଜଳି ଗ୍ରନ୍ଥ

ସମ୍ପାଦନା
ଗଣେଶ୍ୱର ମିଶ୍ର



ସତୀର୍ଥ ପ୍ରକାଶନ
ଭୁବନେଶ୍ୱର

ବିଧୁଭୂଷଣ ଦାସ ଶ୍ରଦ୍ଧାଞ୍ଜଳି ଗ୍ରନ୍ଥ

ସମ୍ପାଦନା
ଗଣେଶ୍ୱର ମିଶ୍ର

ସତୀର୍ଥ ପ୍ରକାଶନ
ଏ-୯, ଉତ୍କଳ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍
ଭୁବନେଶ୍ୱର - ୭୫୧ ୦୦୪

ପ୍ରକାଶ କାଳ
୧୯୯୯

ମୁଦ୍ରଣ
ଭାରତୀୟ ସାହିତ୍ୟ କେନ୍ଦ୍ର
ଏଲ୍/୩୮୨, ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର - ୭୫୧୦୦୩

# ସୂଚୀ

# ମୋ ସ୍ମୃତିରେ ପ୍ରଫେସର ବିଧୁଭୂଷଣ ଦାସ

*ବିଦ୍ୟାଧର ମିଶ୍ର*

ପ୍ରଫେସର ବିଧୁଭୂଷଣ ଦାସଙ୍କ ସହିତ ମୋର ପ୍ରଥମେ ପରିଚୟ ହୋଇଥିଲା ଏକଷଠି ବର୍ଷ ତଳେ । ୧୯୩୮ ମସିହାରେ ଯେତେବେଳେ ଆମ୍ଭେମାନେ ରେଭେନ୍‌ସା କଲେଜରେ ତୃତୀୟ ବାର୍ଷିକ ଶ୍ରେଣୀରେ ପଢ଼ୁଥିଲୁ, ବିଧୁବାବୁ ମାଟ୍ରିକୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ନାମ ଲେଖାଇଥିଲେ । ସେତେବେଳେ ରେଭେନ୍‌ସା କଲେଜ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରାକୃତିକ ଓଡ଼ିଶାର ଏକମାତ୍ର ପ୍ରଧାନ କଲେଜ ଥିଲା । ମାତ୍ର ତାହାର ଛାତ୍ରଛାତ୍ରୀ ସଂଖ୍ୟା ଛଅ ଶହରୁ ବେଶୀ ନଥିଲା । ବିଶ୍ୱବିଦ୍ୟାଳୟରେ ମଧ ସେ ସମୟରେ ଅତି ଅଳ୍ପ ସଂଖ୍ୟକ ପିଲା ପ୍ରଥମ ଶ୍ରେଣୀରେ ମାଟ୍ରିକୁଲେସନ୍ ପାସ୍ କରୁଥିଲେ । ତେଣୁ କଲେଜରେ ପଢ଼ୁଥିବା ମେଧାବୀ ଛାତ୍ରମାନେ ସହଜରେ ପରସ୍ପରକୁ ଜାଣି ପାରୁଥିଲେ ।

ଆମେ କଲେଜର ଅଧିକାଂଶ ପିଲା ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଚାଷୀ ପରିବାର ମାନଙ୍କରୁ ଆସିଥିଲୁ ଏବଂ କଲେଜର ହଷ୍ଟେଲମାନଙ୍କରେ ରହୁଥିଲୁ । କଲେଜର ବହୁ ପିଲା ଅର୍ଥାଭାବ ଏବଂ ଅନ୍ୟ ଅସୁବିଧା ସହିତ ସଂଗ୍ରାମ କରି କଟକ ସହରରେ ବିଭିନ୍ନ ମେସ୍ କିମ୍ବା ବନ୍ଧୁବାନ୍ଧବଙ୍କ ବସା ଘରେ ରହି କଲେଜରେ ପଢ଼ୁଥିଲେ । ଗାଁ'ରେ ଥିବା ସେମାନଙ୍କର ଅଭିଭାବକମାନେ ସେମାନଙ୍କ ପଢ଼ା ବିଷୟରେ ବିଶେଷ କିଛି ଜାଣି ପାରୁନଥିଲେ । ବିଧୁବାବୁଙ୍କ କଲେଜ ଜୀବନ କିନ୍ତୁ ସ୍ୱଚ୍ଛଳ ଏବଂ ସୁଗମ ଥିଲା । ତାଙ୍କର ପିତା ଦୁର୍ଗାଚରଣ ଦାସ ଜିଲ୍ଲା ମାଜିଷ୍ଟ୍ରେଟ୍ ପଦବୀର ଲୋକ ଥିଲେ । ତାଙ୍କ ପରିବାର ଏବଂ ପିଲାମାନେ ସେତେବେଳେ କଟକ ଚୌଧୁରୀ ବଜାର ଦୋଳମୁଣ୍ଡାଇ ରାସ୍ତାରେ ଗୋଟିଏ ବଡ ଦୋମହଲା କୋଠାଘରେ ରହୁଥିଲେ ଏବଂ ସେ ପରିବାରର ପିଲାମାନେ ଘୋଡାଗାଡିରେ ସ୍କୁଲ୍ କଲେଜମାନଙ୍କୁ ପଢ଼ିବାକୁ ଯାଉଥିଲେ । ପରିବାରର ପିଲାମାନଙ୍କର ପଢ଼ାପଢ଼ି ଓ ଶୃଙ୍ଖଳିତ ଜୀବନ ପ୍ରତି ତାଙ୍କ ପିତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ସ୍କୁଲ୍ ସମୟରୁ ମଧ ପିଲାମାନଙ୍କୁ ଘରେ ଘରୋଇ ଶିକ୍ଷକମାନେ ପଢ଼ାଉଥିଲେ ।

ବିଧୁବାବୁ ସ୍କୁଲ କଲେଜରେ ପଢ଼ିବାବେଳେ ଜଣେ ମେଧାବୀ, ସଚ୍ଚରିତ୍ର ଏବଂ ଶୃଙ୍ଖଳିତ ଛାତ୍ର ଥିଲେ । ଅନ୍ୟ ଧନୀ ପରିବାରର ପିଲାମାନଙ୍କ ପରି ପଥଭ୍ରଷ୍ଟ ହୋଇ ନଥିଲେ । ମୋର ଯାହା ମନେ ଅଛି, ସେତେବେଳେ ସେ ରେଭେନ୍‌ସା କଲେଜରେ ଖେଳାଖେଳି କିମ୍ବା କୌଣସି ଛାତ୍ର ଗୋଳମାଳରେ ଯୋଗ ଦେଉ ନଥିଲେ । ସେ

ନିରବରେ ମନୋଯୋଗ ଦେଇ ପାଠ ପଢୁଥିଲେ ଏବଂ କଲେଜରେ ଜଣେ ଶୃଙ୍ଖଳିତ ଓ ମେଧାବୀ ଛାତ୍ର ରୂପେ ପରିଚିତ ଥିଲେ । ୧୯୪୦ ମସିହାରେ ଆମ୍ଭେମାନେ ଯେତେବେଳେ ବି.ଏ. ପରୀକ୍ଷା ଦେଉଥିଲୁ, ବିଧୁବାବୁ ଆଇ.ଏ ପରୀକ୍ଷା ଦେଉଥିଲେ । ସେ ବର୍ଷ ରାଜନୈତିକ କାରଣରୁ ଆମେ ଉଭୟ ବି.ଏ. ଏବଂ ଆଇ.ଏ. ପରୀକ୍ଷାର୍ଥୀମାନେ ପରୀକ୍ଷା ବର୍ଜନ କରିବାକୁ ଆନ୍ଦୋଳନ କରିଥିଲୁ । କଲେଜରେ ହରତାଳ କରି ହଷ୍ଟେଲ୍ ଛାଡି ଚାଲି ଯାଇଥିଲୁ । ଦୃଢ଼ ଶୃଙ୍ଖଳା ମଧ୍ୟରେ ଅଭିଭାବକଙ୍କ ପାଖରେ ରହିଥିବା ବିଧୁବାବୁ ସେ ସବୁ ଗୋଳମାଳଠାରୁ ଦୂରରେ ଥିଲେ । ଆଇ.ଏ. ପରୀକ୍ଷାରେ ସେ ବିଶ୍ୱବିଦ୍ୟାଳୟରେ ଉଚ୍ଚ ସ୍ଥାନ ଅଧିକାର କରି ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ।

ସେତେବେଳେ ସମଗ୍ର ବିହାର ଓଡ଼ିଶା ପ୍ରଦେଶରେ ପାଟନା କଲେଜ ଏବଂ ରେଭେନ୍‌ସା କଲେଜ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ସର୍ବଶ୍ରେଷ୍ଠ କଲେଜ ବୋଲି ଖ୍ୟାତି ଅର୍ଜନ କରିଥିଲା । ବିଶ୍ୱବିଦ୍ୟାଳୟ ପାଟନା ସହରରେ ଅବସ୍ଥିତ ଥିଲା ଏବଂ ପାଟନା କଲେଜ ଓ ପାଟନା ସାଇନ୍ସ କଲେଜରେ ସବୁ ବିଷୟରେ ସ୍ନାତକୋତ୍ତର ଶିକ୍ଷାଦାନ କରାଯାଉଥିଲା । ରେଭେନ୍‌ସା କଲେଜରେ କେବଳ ଇଂରାଜୀରେ ସ୍ନାତକୋତ୍ତର ଶିକ୍ଷାଦାନ ପାଇଁ ସୁବିଧା ଥିଲା । ଆମ୍ଭମାନଙ୍କର ଗୋଟିଏ ଧାରଣା ଥିଲା ଯେ, ପାଟନା କଲେଜରେ ରେଭେନ୍‌ସା କଲେଜ ଅପେକ୍ଷା ଉଭୟ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ଅଧିକ ଭଲ ପଢ଼ା ହେଉଥିଲା, କାରଣ ସେ କଲେଜର ଅଧ୍ୟାପକମାନେ ଉଭୟ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ଶିକ୍ଷାଦାନ କରୁଥିଲେ ।

ସେହି ଧାରଣାର ବଶବର୍ତ୍ତୀହୋଇ ବିଧୁବାବୁ ୧୯୪୦ ମସିହାରେ ରେଭେନ୍‌ସା କଲେଜ ଛାଡି ପାଟନା କଲେଜରେ ବି.ଏ. ପଢ଼ିବାକୁ ଯାଇଥିଲେ । ସେ କଲେଜରେ ସେ ସେତେବେଳର ରାଜକୀୟ ବିଷୟ, ଇଂରାଜୀରେ ଅନର୍ସନେଇ ବି.ଏ. ପଢ଼ିଲେ ଏବଂ କଲେଜ ହତା ଭିତରେ ଥିବା ଜକ୍‌ସନ ହଷ୍ଟେଲରେ ରହୁଥିଲେ । ୧୯୪୦ ମସିହାରୁ ୧୯୪୨ ମସିହା ଯାଏ ମୁଁ ପାଟନା କଲେଜରେ ଅର୍ଥନୀତିରେ ଏମ୍.ଏ ପଢ଼ିବା ସମୟରେ ବିଧୁବାବୁ ସେହି କଲେଜରେ ଇଂରାଜୀରେ ଅନର୍ସ ନେଇ ବି.ଏ ପଢୁଥିଲେ । ସେଠାରେ ମଧ୍ୟ ମୁଁ ଦେଖିଛି ଯେ ସେ କଲେଜର ଅନ୍ୟ କାର୍ଯ୍ୟକଳାପରେ ଅଂଶ ଗ୍ରହଣ ନକରି ପାଠପଢ଼ାରେ ସର୍ବଦା ମନୋନିବେଶ କରୁଥିଲେ । ଫଳରେ ୧୯୪୨ ମସିହାରେ ସେ ଇଂରାଜୀ ଅନର୍ସରେ ପ୍ରଥମ ଶ୍ରେଣୀରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ବି.ଏ. ପାସ୍ କରିଥିଲେ । ୧୯୪୨ରୁ ୧୯୪୮ ମସିହା ମଧ୍ୟରେ ସେହି କଲେଜରେ ଇଂରାଜୀରେ ଏମ.ଏ. ପଢୁଥିବା ସମୟରେ ତାଙ୍କର ସେହି ଅଧ୍ୟୟନ ଅଭ୍ୟାସ ଥିଲା ଏବଂ ୧୯୪୪ ମସିହାରେ ସେ ପାଟନା ବିଶ୍ୱବିଦ୍ୟାଳୟର

ଇଂରାଜୀରେ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରିଥିଲେ। ତାଙ୍କର ଛାତ୍ରଜୀବନ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ସେ ବିଭିନ୍ନ ଶ୍ରେଣୀରେ ପାଠ୍ୟ ପୁସ୍ତକ ବ୍ୟତୀତ ବିଭିନ୍ନ ବିଷୟରେ ବହୁ ପୁସ୍ତକ ପଢ଼ିଥିଲେ ଏବଂ ତାଙ୍କ ନିର୍ବାଚିତ ପ୍ରଧାନ ବିଷୟ ଇଂରାଜୀରେ ତାଙ୍କର ଜ୍ଞାନ ଉଚ୍ଚକୋଟିର ଥିଲା । ସ୍କୁଲରୁ କଲେଜ ଶିକ୍ଷା ଶେଷ ପର୍ଯ୍ୟନ୍ତ ତାଙ୍କର ଶିକ୍ଷକ ଓ ସହପାଠୀମାନେ ତାଙ୍କୁ ଜଣେ ଅତି ମେଧାବୀ ଛାତ୍ର ରୂପେ ସମ୍ମାନ ଦେଉଥିଲେ ।ସେତେବେଳେ ମୁଁ ତାଙ୍କୁ ଦେଖିଛି, ସେ ଅଧ୍ୟୟନ କ୍ଷେତ୍ରରେ ଜଣେ ନିରବ ସାଧକ ଥିଲେ ।

ମୁଁ ଯେତେବେଳେ ୧୯୪୨ ମସିହାରେ ଅର୍ଥନୀତିରେ ଏମ୍.ଏ. ପାସ କରିଥିଲି , ସେତେବେଳେ ରେଭେନ୍ସା କଲେଜ୍‌ରେ ଲେକ୍‌ଚରର୍ ପଦ ଖାଲି ନଥିବାରୁ କଲେଜ ଚାକିରୀରେ ଯୋଗ ଦେଇ ପାରି ନଥିଲି। ୧୯୪୪ ମସିହାରେ ଓଡ଼ିଶାରେ ସମ୍ବଲପୁର,ପୁରୀ ଏବଂ ବାଲେଶ୍ୱରରେ ପ୍ରଥମ ଶ୍ରେଣୀ କଲେଜମାନ ପ୍ରତିଷ୍ଠିତ ହେଲା । ମୁଁ ସମ୍ବଲପୁର କଲେଜରେ ଅର୍ଥନୀତିରେ ଲେକ୍‌ଚରର୍ ରୂପେ ଯୋଗ ଦେଲି । ବିଧୁବାବୁ ସେହିବର୍ଷ ଇଂରାଜୀରେ ଏମ୍.ଏ. ପାସ୍ କରି ରେଭେନ୍ସା କଲେଜରେ ଲେକ୍‌ଚରର ରୂପେ ଯୋଗ ଦେଲେ । ସେହି ବର୍ଷଠାରୁ ସେ ରେଭେନ୍ସା କଲେଜ ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ସରକାରୀ କଲେଜରେ ଚାକିରୀ କରିନାହାନ୍ତି । ଚାକିରୀ କାଳରେ କିଛି ବର୍ଷ ସେ ନେପାଳରେ ଏବଂ ରାଞ୍ଚି କଲେଜରେ କାର୍ଯ୍ୟ କରିଥିଲେ । ରେଭେନ୍ସା କଲେଜ ହିଁ ତାଙ୍କ ଅଧ୍ୟାପକ ଜୀବନର କର୍ମକ୍ଷେତ୍ର ଥିଲା । ତାଙ୍କର ଛାତ୍ର ଓ ସହକର୍ମୀମାନେ ସର୍ବଦା ତାଙ୍କର ଇଂରାଜୀ ଭାଷା ଓ ସାହିତ୍ୟରେ ଜ୍ଞାନ ଏବଂ ଅଧ୍ୟାପନା ଶୈଳୀର ଉଚ୍ଚ ପ୍ରଶଂସା କରନ୍ତି ।

ବିଶ୍ୱଯୁଦ୍ଧ ଶେଷରେ ୧୯୪୬ ମସିହାରୁ ଭାରତର ସବୁ ରାଜ୍ୟରେ ଉଚ୍ଚ ଶିକ୍ଷାପ୍ରାପ୍ତ ମେଧାବୀ ଯୁବକମାନଙ୍କୁ ଇଂଲଣ୍ଡ, ଆମେରିକା ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ଶିକ୍ଷା ନେବା ପାଇଁ ଭାରତ ସରକାର ଏବଂ ବିଭିନ୍ନ ବୈଦେଶିକ ସରକାର ସ୍କଲାରସିପ୍‌ମାନ ଦେଉଥିଲେ । ଭାରତବର୍ଷରେ ବୈଷୟିକ ଏବଂ ବିଭିନ୍ନ ସାଧାରଣ ବିଷୟରେ ଉଚ୍ଚ ଶିକ୍ଷା ଓ ତାଲିମ୍ ପ୍ରାପ୍ତ ଶ୍ରମଶକ୍ତି ସୃଷ୍ଟିକରିବା ଏବଂ ଭାରତର ବିଭିନ୍ନ ରାଜ୍ୟରେ ସମସ୍ତ ବିଷୟରେ ଶିକ୍ଷାନୁଷ୍ଠାନମାନଙ୍କର ମାନବୃଦ୍ଧି କରିବା ସେ ଯୋଜନାର ଉଦ୍ଦେଶ୍ୟ ଥିଲା । ସେହି ଯୋଜନା ଅନୁସାରେ ବିଧୁବାବୁ ଆମେରିକାର ବିଖ୍ୟାତ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଶିକ୍ଷା ବିଷୟରେ ଏକବର୍ଷ ଏମ.ଏ. ପଢ଼ିବା ଏବଂ ଇଂଲଣ୍ଡର ବିଶ୍ୱବିଖ୍ୟାତ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଦୁଇ ବର୍ଷ ବି.ଲିଟ୍ ଡିଗ୍ରୀ ପାଇଁ ପଢ଼ିବାର ସୁବିଧା ପାଇଥିଲେ ।

ଅକ୍ସଫୋର୍ଡରୁ ବି.ଲିଟ୍ ଡିଗ୍ରୀ ସହ ଫେରି ଆସି ସେ ରେଭେନ୍ସା କଲେଜରେ ତାଙ୍କ ପୂର୍ବ ପଦବୀରେ ଯୋଗ ଦେଇଥିଲେ । ସେହି ପଦବୀରୁ କ୍ଷିପ୍ର ଗତିରେ ସେ

ପ୍ରଥମେ ରିଡର ଏବଂ ତା'ପରେ ପ୍ରଫେସର ପଦବୀକୁ ପ୍ରମୋଶନ ପାଇଥିଲେ । ରେଭେନ୍‌ସା କଲେଜରେ ଇଂରାଜୀ ବିଭାଗରେ ଶୀଘ୍ର ପ୍ରଫେସର ହୋଇଯିବାରୁ, ୧୯୪୨ ମସିହାରୁ ଲେକ୍‌ଚରର ପଦବୀରେ ଯୋଗ ଦେଇଥିବା ସମସ୍ତ ଅଧ୍ୟାପକଙ୍କ ମଧ୍ୟରେ ସେ ବରିଷ୍ଠ ହୋଇଥିଲେ । ଫଳରେ ସେ ଆମ ସମସ୍ତଙ୍କ ମଧ୍ୟରୁ ଶୀଘ୍ର ଉପରକୁ ଉଠି ରେଭେନ୍‌ସା କଲେଜର ଅଧ୍ୟକ୍ଷ ଏବଂ ଓଡ଼ିଶା ରାଜ୍ୟର ଡି.ପି.ଆଇ. ହୋଇଥିଲେ । ଓଡ଼ିଶାରେ ସେତେବେଳେ ବହୁକାଳ ଯାଏ ଗୋଟିଏ ମାତ୍ର ଡି.ପି.ଆଇ ପଦବୀ ଥିଲା । ପରେ ସ୍କୁଲ ବିଭାଗ ପାଇଁ ଆଉ ଗୋଟିଏ ଡି.ପି.ଆଇ ପଦବୀ ସୃଷ୍ଟି ହୋଇଥିଲା । ବିଧୁବାବୁ ଦଶବର୍ଷରୁ ଊର୍ଦ୍ଧ୍ୱ ସମୟ ଡି.ପି.ଆଇ ପଦବୀରେ ରହିଥିବାରୁ ଓଡ଼ିଶାର ସବୁ ସ୍ତରର ଶିକ୍ଷାର ପ୍ରସାର ଓ ମାନ ନିର୍ଦ୍ଧାରଣ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ରେଭେନ୍‌ସା କଲେଜର ଇଂରାଜୀ ବିଭାଗର ମୁଖ୍ୟ ପ୍ରଫେସର ଭାବରେ ତାଙ୍କର ଛାତ୍ର ଓ ସହକର୍ମୀମାନଙ୍କ ମଧ୍ୟରେ ଖୁବ୍ ସୁନାମ ଥିଲା । ବସ୍ତୁତଃ ତାଙ୍କ ଜୀବନକାଳ ମଧ୍ୟରେ ସେ ଇଂରାଜୀ ଭାଷା ଓ ସାହିତ୍ୟରେ ଜଣେ ଉଚ୍ଚ ଜ୍ଞାନସମ୍ପନ୍ନ ଏବଂ ଅଭିଜ୍ଞ ଅଧ୍ୟାପକ ରୂପେ ଓଡ଼ିଶାରେ ଏବଂ ଭାରତର ଅନ୍ୟ ରାଜ୍ୟମାନଙ୍କରେ ଖ୍ୟାତି ଅର୍ଜନ କରିଥିଲେ । ଦର୍ଶବର୍ଷରୁ ଅଧିକ କାଳ ଡି.ପି.ଆଇ. ପଦରେ ରହିଥିବାରୁ ସେ ଓଡ଼ିଶା ସରକାରଙ୍କର ରାଜନୈତିକ ଏବଂ ପ୍ରଶାସନିକ କର୍ତ୍ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିଲେ ଏବଂ ସେମାନେ ଶିକ୍ଷା ବିଷୟରେ ତାଙ୍କଠାରୁ ପରାମର୍ଶ ଲୋଡୁଥିଲେ । ସେହି ପରିସ୍ଥିତିରେ ସେ ଓଡ଼ିଶାରେ ବହୁ କଲେଜ ପ୍ରତିଷ୍ଠା ଏବଂ କଲେଜ ଶିକ୍ଷକମାନଙ୍କ ନିଯୁକ୍ତି, ପ୍ରମୋଶନ ଏବଂ ବଦଳି ପ୍ରଭୃତି କରିବାରେ ମୁଖ୍ୟ କର୍ତ୍ତା ହୋଇଥିଲେ । ସେ ସମୟରେ ଶିକ୍ଷା ବିଭାଗର ଜଣେ ଦକ୍ଷ ପ୍ରଶାସକ ବୋଲି ତାଙ୍କର ଖ୍ୟାତି ଥିଲା ।

୧୯୬୮ ଏବଂ ୧୯୮୦ ମସିହା ମଧ୍ୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ଛଅ ବର୍ଷରୁ ଅଧିକ ସମୟ ସିଣ୍ଡିକେଟ୍‌ର ସଭ୍ୟ ଏବଂ ତିନିବର୍ଷ କୁଳପତି ଥିବା ସମୟରେ ବିଧୁବାବୁ ଓଡ଼ିଶାର ଉଚ୍ଚ ଶିକ୍ଷାର ଡ଼ିରେକ୍ଟର ଥିଲେ । ଉଚ୍ଚଶିକ୍ଷା ଡିରେକ୍ଟରଙ୍କର ବିଶ୍ୱବିଦ୍ୟାଳୟ ପ୍ରଶାସନରେ ସର୍ବଦା ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ନିଜ ପଦବୀ ଅନୁସାରେ ସେ ସରକାରଙ୍କ ପ୍ରତିନିଧି ହିସାବରେ ବିଶ୍ୱବିଦ୍ୟାଳୟର ସିନେଟ୍, ସିଣ୍ଡିକେଟ୍ ଓ ଏକାଡେମିକ୍ କାଉନସିଲ୍‌ର ସଭ୍ୟ, ବିଶ୍ୱବିଦ୍ୟାଳୟର ସମସ୍ତ ଶିକ୍ଷକ ଓ ପ୍ରଶାସନିକ ଅଫିସର ନିଯୁକ୍ତି ନିର୍ବାଚନ କମିଟି, ଅର୍ଥ କମିଟି, ପରୀକ୍ଷା ପରିଚାଳନା କମିଟି ପ୍ରଭୃତି ସମସ୍ତ ଗୁରୁତ୍ୱପୂର୍ଣ୍ଣ କମିଟିମାନଙ୍କରେ ସଭ୍ୟ ଥାନ୍ତି । ସରକାରଙ୍କଠାରୁ ବିଶ୍ୱବିଦ୍ୟାଳୟମାନଙ୍କ ସମସ୍ତ ଅନୁଦାନ ଡି.ପି.ଆଇଙ୍କ ମାଧ୍ୟମରେ ଦିଆଯାଏ ଏବଂ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ସମସ୍ତ କଲେଜ ଓ ଶିକ୍ଷାଦାନ ବିଭାଗ ପ୍ରଶାସନରେ ଡି.ପି.ଆଇଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ । ବସ୍ତୁତଃ ବିଶ୍ୱବିଦ୍ୟାଳୟର ସମସ୍ତ ଶିକ୍ଷାନୀତି କୁଳପତି, ଡି.ପି.ଆଇ ଏବଂ ସିଣ୍ଡିକେଟ୍ ନିର୍ଦ୍ଧାରଣ କରନ୍ତି ଏବଂ ସେଗୁଡ଼ିକୁ

କାର୍ଯ୍ୟକାରୀ କରନ୍ତି । କୁଳପତି ଓ ଡି.ପି.ଆଇଙ୍କ ସହଯୋଗରେ ବିଶ୍ୱବିଦ୍ୟାଳୟ ଶାସନ ସହଜ ଓ ସୁଗମ ଭାବରେ ଚାଲେ । ସେମାନଙ୍କ ମଧ୍ୟରେ ମତ ଭେଦ ଓ ବିବାଦ ହେଲେ ପ୍ରଶାସନରେ ବିଭ୍ରାଟ ଉପୁଜେ । ପ୍ରାୟ ସାଢ଼େ ନଅବର୍ଷ ମୁଁ ସିଣ୍ଡିକେଟ୍‌ର ସଭ୍ୟ ଏବଂ କୁଳପତି ଥିବା ସମୟରେ, ମୁଁ ଅନୁଭବ କରିଥିଲି ଯେ ରାଜ୍ୟର ଶିକ୍ଷା କ୍ଷେତ୍ରରେ ପ୍ରାୟ ସବୁ ବିଷୟରେ ଡି.ପି.ଆଇ ବିଧୁବାବୁ ଏବଂ ମୋର ମତ ସମାନ ଥିଲା ।

ଆମେ ଚାହୁଁଥିଲୁ ଯେ ଶିକ୍ଷାଦାନର କୌଣସି ସୁବିଧା ନଥାଇ ରାଜ୍ୟରେ ଛତୁଫୁଟିଲା ପରି କଲେଜଗୁଡ଼ାକ ଚାରିଆଡେ ଖୋଲା ନଯାଉ । ଶିକ୍ଷାଦାନ ପାଇଁ ସୁବିଧା କରି ଶିକ୍ଷାର ପ୍ରସାରହେଉ ଆମେ ଚାହୁଁଥିଲୁ, କଲେଜ ଏବଂ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କରେ ମେଧାବୀ ଏବଂ ଉପଯୁକ୍ତ ଶିକ୍ଷକ ନିଯୁକ୍ତ ହୁଅନ୍ତୁ । କଲେଜ ଓ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କରେ ନିୟମିତ ଭାବରେ ଉଚ୍ଚମାନର ଶିକ୍ଷା ଦିଆଯାଉ ଏବଂ ଗବେଷଣା କରାଯାଉ । ବିଶ୍ୱବିଦ୍ୟାଳୟର ପରୀକ୍ଷାଗୁଡିକ ନିର୍ଦ୍ଧାରିତ ସମୟରେ ଏବଂ ନିୟମ ଅନୁସାରେ ହେଉ । କୌଣସି ସ୍ତରରେ ଛାତ୍ରଛାତ୍ରୀମାନେ ପରୀକ୍ଷାମାନଙ୍କରେ ଅସଦୁପାୟ ଅବଲମ୍ବନ ନ କରନ୍ତୁ । ଅସଦୁପାୟ ଅବଲମ୍ବନ କରୁଥିବା ଛାତ୍ରଛାତ୍ରୀମାନଙ୍କୁ ନିୟମ ଅନୁସାରେ ଦଣ୍ଡ ଦିଆଯାଉ । ରାଜ୍ୟର କଲେଜ ଓ ବିଶ୍ୱବିଦ୍ୟାଳୟର ବିଭାଗମାନଙ୍କରେ କୌଣସି ପ୍ରକାର ହରତାଳ, ଗଣ୍ଡଗୋଳ ଓ ବିଶୃଙ୍ଖଳା ପ୍ରଭୃତି ନ ହେଉ । ଆମ ରାଜ୍ୟର ପିଲାମାନେ ଦେଶ ବିଦେଶରେ କାମ କରନ୍ତୁ ଏବଂ ସର୍ବ ଭାରତୀୟ ପ୍ରତିଯୋଗିତାମାନଙ୍କରେ ଉଚ୍ଚସ୍ଥାନ ଅଧିକାର କରନ୍ତୁ । ଏ ସବୁ ବିଷୟରେ ନୀତି ଓ କାର୍ଯ୍ୟପନ୍ଥା ନିର୍ଦ୍ଧାରଣରେ ତାଙ୍କର ଓ ମୋର ମତ ସମାନ ଥିଲା । ସେଥିଯୋଗୁଁ ଆମ ଦୁଇଜଣଙ୍କ ମଧ୍ୟରେ ବିଶେଷ ସହୃଦୟତା ଥିଲା ।

୧୯୮୦ ମସିହାରେ, ପ୍ରାୟ ଏକ ସମୟରେ ଆମେ ଉଭୟ ଶିକ୍ଷା ବିଭାଗ ଚାକିରୀରୁ ଅବସର ନେଲୁ । ତାପରେ ପ୍ରାୟ ଦୁଇବର୍ଷ ସେ ଉତ୍ତର ପୂର୍ବ ପାର୍ବତୀୟ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ଉପକୁଳପତି ରୂପେ କାର୍ଯ୍ୟ କରିଥିଲେ । ତାହାପରେ ଆମେ ଉଭୟ ଭୁବନେଶ୍ୱରର ଶହୀଦ ନଗରରେ ବାସ କରୁଥିଲୁ । ଅବସର ସମୟରେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ବହୁ ହୃଦୟ ବିଦାରକ ଘଟଣା ଆମ ଗୋଚରକୁ ଆସୁଥିଲା । ଶିକ୍ଷାଦାନ ପାଇଁ କୌଣସି ସୁବିଧା ନଥାଇ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ହଜାରରୁ ଅଧିକ ଅତି ଦୁର୍ବଳ କଲେଜ ପ୍ରତିଷ୍ଠିତ ହୋଇଗଲା । ମାଧ୍ୟମିକ ବୋର୍ଡ ଏବଂ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କରେ ବ୍ୟାପକ ଭାବରେ କପି କରିବା ସାଧାରଣ କଥା ହୋଇଗଲା । ବହୁ ଅଞ୍ଚଳରେ ଛାତ୍ରଛାତ୍ରୀମାନଙ୍କର ଅସଦୁପାୟ ଅବଲମ୍ବନରେ ଅଭିଭାବକ, କଲେଜ କର୍ତ୍ତୃପକ୍ଷ ଏବଂ ଶିକ୍ଷକମାନେ ସହଯୋଗ ଓ ସାହାଯ୍ୟ କଲେ । ଏ ଦୁର୍ନୀତିକୁ ପ୍ରତିରୋଧ କରୁଥିବା ସାଧୁ ଏବଂ କର୍ତ୍ତବ୍ୟନିଷ୍ଠ ଶିକ୍ଷକମାନଙ୍କୁ ଅସାମାଜିକ ଛାତ୍ରମାନେ ହିଂସାତ୍ମକ ଆକ୍ରମଣ କଲେ । ସ୍କୁଲ୍ କଲେଜମାନଙ୍କରେ ନିୟମିତ ପାଠ ପଢ଼ା ନକରି ଚାରିଆଡେ

ଂରୋଇ ଟ୍ୟୁସନ ପାଇଁ ଅନୁଷ୍ଠାନମାନଙ୍କର ପ୍ରସାର ହେଲା । ବହୁ ଶିକ୍ଷାନୁଷ୍ଠାନରେ ଛାତ୍ରଛାତ୍ରୀଙ୍କ ହରତାଳ ସହିତ ନାନା କାରଣରୁ ଶିକ୍ଷକମାନଙ୍କର ମଧ୍ୟ ବହୁବାର ହରତାଳ ହେଲା । ପ୍ରତି ବର୍ଷ ମାର୍ଚ୍ଚ ମାସରେ ଭୁବନେଶ୍ୱରରେ ସ୍କୁଲ୍-କଲେଜ ଶିକ୍ଷକମାନଙ୍କର ବିରାଟ ସମାଗମ, ବିକ୍ଷୋଭ ଏବଂ ଧାରଣା ପ୍ରଭୃତି ହେଲା ।

ଶିକ୍ଷା ବିଭାଗରେ ଶିକ୍ଷା ପାଇଁ ଯୋଜନା କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର ସଂସ୍ଥା ଅଛି । ବହୁକାଳ ବିଧୁବାବୁଙ୍କ ତତ୍ତ୍ୱାବଧାନରେ ସେ ଯୋଜନା ପ୍ରସ୍ତୁତ ହେଉଥିଲା । ତା'ପରେ କିଛି ସୁଫଳ ଆଜିଯାଏ ମିଳି ନାହିଁ । ଏ ସବୁ ଘଟଣା ମୋ ପ୍ରତି ଯେପରି ଯନ୍ତ୍ରଣାଦାୟକ ଥିଲା, ତାଙ୍କ ପ୍ରତି ମଧ୍ୟ ସେହିପରି ଯନ୍ତ୍ରଣାଦାୟକ ହୋଇଥିଲା ।

ଆମ୍ଭେମାନେ ଥିଲୁ ଭିନ୍ନ ସମୟର ଛାତ୍ର ଓ ଶିକ୍ଷକ । ଆଜିକାଲିର ଲୋକମାନେ ଆମକୁ ପୁରୁଣାକାଳିଆ ବା ମରହଟିଆ କହି ପାରନ୍ତି । କିନ୍ତୁ ଆମ ସମୟର ରେଭେନ୍‌ସା କଲେଜ, ପାଟନା କଲେଜ, ଆଲାହାବାଦ ଓ ବନାରସ୍ ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କର ପରିବେଶ ଏବଂ ଆଜିକାଲିର ଓଡ଼ିଶା, ବିହାର, ଉତ୍ତର ପ୍ରଦେଶ ପ୍ରଭୃତି ଭାରତର ବିଭିନ୍ନ ରାଜ୍ୟମାନଙ୍କର କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କର ପରିବେଶ ମଧ୍ୟରେ ପ୍ରଭେଦ ଅନୁଭବ କରିଥିବା ଆମେ କେବଳ ଜାଣି ପାରିଛୁ । ନୂତନ ପିଢ଼ିର ଛାତ୍ର ଓ ଶିକ୍ଷକମାନେ ତାହା ଜାଣିପାରିବା ସମ୍ଭବ ନୁହେଁ । ଆମେ ପାଠ ପଢ଼ିବା ସମୟରେ ଏବଂ ପ୍ରଥମ ଅବସ୍ଥାରେ ଶିକ୍ଷକତା କରିବା ସମୟରେ, ଆଜିକାଲିର ଶିକ୍ଷା କ୍ଷେତ୍ରରେ ବିଭ୍ରାଟ ଓ ବିଶୃଙ୍ଖଳା ଅଚିନ୍ତନୀୟ ଥିଲା ।

ବିଧୁବାବୁ ପିଲାଦିନୁ ଖୁବ୍ ଧୀରସ୍ଥିର ଏବଂ ଗମ୍ଭୀର ସ୍ୱଭାବର ଲୋକ ଥିଲେ । ଅନ୍ତତଃ ପକ୍ଷେ ମୋଠାରୁ ସେ ଅଧିକ ଧାର୍ମିକ ସ୍ୱଭାବର ବ୍ୟକ୍ତି ଥିଲେ । ପ୍ରତିଦିନ ପୂଜା ପ୍ରାର୍ଥନାରେ ସେ ବହୁ ସମୟ କଟାଉଥିଲେ । ବିଦ୍ୟାଧ୍ୟୟନ, ବିଦ୍ୟାଚର୍ଚ୍ଚା, ଜ୍ଞାନ ଅର୍ଜନ ଓ ଜ୍ଞାନ ବିକରଣରେ ତାଙ୍କ ଜୀବନ କଟିଯାଇଛି । ଇଂଲଣ୍ଡର ଅକ୍ସଫୋର୍ଡ , କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଏବଂ ଆମେରିକାର କଲମ୍ବିଆ, ହାର୍ଭାର୍ଡ ଏବଂ ଷ୍ଟାନ୍‌ଫୋର୍ଡ୍ ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କର ପରିବେଶ ଏବଂ ସେ ସବୁର ସଦା ଜ୍ଞାନରତ ଅଧ୍ୟାପକ ଓ ଛାତ୍ରଛାତ୍ରୀ ତାଙ୍କର ଆଦର୍ଶ ଥିଲେ । ମାତ୍ର ସେ ସବୁ ତ ଆମ ଦେଶର ବର୍ତ୍ତମାନର ପରିସ୍ଥିତିରେ ଆକାଶ କୁସୁମ । ଏ ସବୁ ବୋଧହୁଏ ତାଙ୍କ ଶେଷ ଜୀବନରେ ଚିନ୍ତାର ବିଷୟ ଥିଲା ।

ଅବସରପ୍ରାପ୍ତ କୁଳପତି
ଉତ୍କଳ ବିଶ୍ୱବିଦ୍ୟାଳୟ



# ଏକ ଯୁଗାବସାନ

**ସର୍ବେଶ୍ୱର ଦାଶ**

ବିଧୁବାବୁ ଚାଲିଗଲେ । ତାଙ୍କ ବିୟୋଗରେ ମୋର ମନେ ହେଲା, ଯେପରି ଓଡ଼ିଶାର ବୌଦ୍ଧିକ ଜଗତରେ ଏକ ଯୁଗାବସାନ ହେଲା । ତାଙ୍କ ସହିତ ମୋର ସମ୍ପର୍କ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ- କେତେ ସ୍ମୃତି ଭାସି ଆସୁଛି ମନକୁ ।

୧୯୪୨ରେ ପାଟନାରେ ତାଙ୍କୁ ପ୍ରଥମେ ଦେଖିଥିଲେ ମଧ୍ୟ ରେଭେନ୍ସା କଲେଜରେ ମୋରି ଅଧ୍ୟାପକ ଭାବରେ ଜୀବନର ପ୍ରାରମ୍ଭରେ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଲି । ପ୍ରବୀଣ ପ୍ରଖ୍ୟାତ ଅଧ୍ୟାପକ ପି.ଏସ. ସୁନ୍ଦରମ୍ ବାଲେଶ୍ୱର କଲେଜକୁ ପ୍ରିନ୍ସିପାଲ୍ ରୂପେ ବଦଳି ହୋଇଯିବା ପରେ ବିଧୁବାବୁ ହେଲେ ଆମର ଇଂରାଜୀ ବିଭାଗର ମୁଖ୍ୟ । ସଦ୍ୟ ବିଲାତ-ଆମେରିକା ଫେରନ୍ତା ବିଧୁବାବୁ ଅନର୍ସ୍ ଓ ସ୍ନାତକୋତ୍ତର ଶ୍ରେଣୀରେ ଇଂରାଜୀ ସାହିତ୍ୟର ଶିକ୍ଷାଦାନର ଧାରା ଯେପରି ବଦଳାଇ ଦେଲେ- ଆଧୁନିକତାର ଝଲକ ଆଣିଦେଲେ । ପାଟନା କଲେଜରେ ସେ ଥିଲେ ବିଶିଷ୍ଟ ଅଧ୍ୟାପକଦ୍ୱୟ ଫଜରୁଲ୍ ରହମାନ୍ ଓ କଲିମୁଦ୍ଦିନଙ୍କ ପ୍ରିୟଶିଷ୍ୟ । ପୁଣି ଅକ୍ସଫୋର୍ଡ୍‌ରେ ବି.ଲିଟ୍ କଲେ, ଆମେରିକାରେ ଇଂରାଜୀ ଶିକ୍ଷାଦାନ ବିଷୟରେ ଏ.ଏମ୍. କଲେ । ସଙ୍ଗରେ ଯେପରି ନେଇ ଆସିଲେ ଆଧୁନିକ ଚେତନାର ଆଧୁନିକ ସାହିତ୍ୟିକ ବିଚାର, ବିଶ୍ଳେଷଣର ସ୍ରୋତ- ନବ ସମାଲୋଚନାର (New Criticism) ଧାରା । ଏଫ୍.ଆର.ଲେଭିସ୍‌ଙ୍କର ସମାଲୋଚନାର ଧାରା ପ୍ଲାବିତ କଲା ତାଙ୍କରି ମାଧ୍ୟମରେ ଇଂରାଜୀ ବିଭାଗର କୃତୀ ଛାତ୍ରଙ୍କ ମନକୁ । ତାଙ୍କର ସେହି ଯୁବକାବସ୍ଥାରେ ଜ୍ଞାନର ବ୍ୟାପକତା, ଦୀପ୍ତ ବୌଦ୍ଧିକତା, ପ୍ରଭାବଶାଳୀ ଭାଷା ଉଦ୍‌ବୁଦ୍ଧ କଲା ତରୁଣମାନଙ୍କୁ । ମୋ ଭଳି ତାଙ୍କରି ଚେତନାବିଶିଷ୍ଟ ବ୍ୟକ୍ତି ତାଙ୍କ ସହିତ ସବୁବେଳେ ଏକମତ ନ ହେଲେ ମଧ୍ୟ ତାଙ୍କର ପାଣ୍ଡିତ୍ୟ ଓ ପ୍ରତିଭାରେ ମୁଗ୍ଧ ହୋଇଯାଉଥିଲା । ମୁଁ ସେହି ଆଧୁନିକ ସାହିତ୍ୟ ବିଚାରକୁ ସବୁବେଳେ ଗ୍ରହଣ କରି ନଥିଲେ ମଧ୍ୟ ସେ ଅସହିଷ୍ଣୁ ହୋଇ ପଡୁ ନଥିଲେ । କେତେ କେତେ ବେଳେ ବଡ ଭାଇ ଭଳି ସ୍ନେହରେ ମତେ ଟିକିଏ ସେଥିପାଇଁ ଥଟ୍ଟା କରୁଥିଲେ ମଧ୍ୟ କଠୋର ସମାଲୋଚନା କରୁ ନଥିଲେ ।

ରେଭେନ୍ସା କଲେଜର Dramatic Society ରେ ସେ କି ଦେବେନ୍ଦ୍ର ବାବୁ (ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର) ଉପସଭାପତି ଥାଆନ୍ତି । ତାଙ୍କରି ପ୍ରେରଣାରେ ତାଙ୍କର ପ୍ରିୟ ଛାତ୍ର ଯତୀନ୍ଦ୍ର (ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି) ଗାଲସ୍‌ୱର୍ଦି, ହଫମାନ, ଚେକଭ୍ ପ୍ରଭୃତି ବିଶିଷ୍ଟ ପାଶ୍ଚାତ୍ୟ ନାଟ୍ୟକାରମାନଙ୍କର କେତେକ ନାଟକର ଓଡ଼ିଆ

ରୂପାନ୍ତର କରନ୍ତି । ମୁଖ୍ୟତଃ ତାଙ୍କରି ନିର୍ଦ୍ଦେଶନାରେ ସେଗୁଡିକ ମଞ୍ଚସ୍ଥ ହୁଏ । ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ ହୁଏ ।

ସେ ସମୟର ଆଧୁନିକ ନାଟକ ପରି, ଆଧୁନିକ କବିତା ମଧ୍ୟ ମୁଖ୍ୟତଃ ତାଙ୍କରି ପ୍ରେରଣାରେ ଛାତ୍ରମାନଙ୍କ ମଧ୍ୟରେ ଲୋକପ୍ରିୟ ହେଲା । ଏଜରା ପାଉଣ୍ଡଙ୍କ କବିତା, ଟି.ଏସ୍. ଇଲିଅଟ୍‌ଙ୍କ କବିତା ତଥା ସମାଲୋଚନା ପ୍ରତି ଛାତ୍ରମାନେ ଆଗ୍ରହାନ୍ୱିତ ହେଲେ । ଭାନୁଜୀ ରାଓ, ଗୁରୁ ପ୍ରସାଦ ମହାନ୍ତି ପ୍ରମୁଖ ଲେଖିଲେ ନୂତନ କବିତା । ଯତୀନ୍ଦ୍ର ମୋହନ,ଭାନୁଜୀ ରାଓଙ୍କ ଉଦ୍ୟମରେ 'ପ୍ରଜ୍ଞା' ନାମକ ପତ୍ରିକା ବାହାରିଲା । ପ୍ରାଚୀନ ଓ ସମସାମୟିକ କବିଙ୍କର କାବ୍ୟ କବିତାର ନୂତନ ମାର୍ଗରେ ବିଶ୍ଳେଷଣ କରାଗଲା ।

ବିଧୁବାବୁ ମୁଖ୍ୟତଃ ଥିଲେ ଜଣେ ଶିକ୍ଷକ-ଅଧ୍ୟାପକ । ଡି.ପି.ଆଇ ଥିଲାବେଳେ ବି ସେ ଯଥାସମ୍ଭବ ନିୟମିତ ଘଣ୍ଟା ଘଣ୍ଟା ଧରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ । ନେପାଳରେ ଇଂରାଜୀ ବିଭାଗର ପ୍ରତିଷ୍ଠା ପାଇଁ ପ୍ରାରମ୍ଭିକ କାର୍ଯ୍ୟ କରି ସେଠାରେ ପ୍ରଫେସର ରୂପେ କିଛି ବର୍ଷ ଅଧ୍ୟାପନା କରିଥିଲେ ।ଅବସରଗ୍ରହଣ ପରେ ନାଗାଲାଣ୍ଡରେ ମଧ୍ୟ କିଛି ବର୍ଷ ଅଧ୍ୟାପନା କରିଥିଲେ ।

ବିଧୁବାବୁ ଥିଲେ ଏକ ଅନନ୍ୟ ବ୍ୟକ୍ତିତ୍ୱ । ବୌଦ୍ଧିକତା ସହ ମାନବିକତାର ସମନ୍ୱୟ ଘଟିଥିଲା ତାଙ୍କଠାରେ । ପ୍ରତିଭାଶାଳୀ ତରୁଣଙ୍କୁ ସର୍ବ ପ୍ରକାରେ ସେ ଉତ୍ସାହିତ କରୁଥିଲେ । ଇଂରାଜୀ ଓ ଦେଶବିଦେଶର ସାହିତ୍ୟ ବ୍ୟତୀତ କଳା, ଦର୍ଶନ, ଇତିହାସ, ଆଧୁନିକ ବୈଜ୍ଞାନିକ ଚିନ୍ତାଧାରାରେ ତାଙ୍କର ଗଭୀର ପ୍ରବେଶ ଥିଲା । ସେ ବହୁ ଉଚ୍ଚକୋଟୀର ଗବେଷଣାପ୍ରସୂତ ପ୍ରବନ୍ଧ ଲେଖିଥିଲେ । ତାଙ୍କର ମୃତ୍ୟୁ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଅପୂରଣୀୟ କ୍ଷତି ଘଟାଇଲା ।

୧୯୬୯ରେ ପୁଲିସ୍ ଲାଠିମାଡରେ ଦେବେନ୍ଦ୍ର ବାବୁ (ତତ୍କାଳୀନ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର) ଓ ମୁଁ ଆହତ ହେଲୁ । ସେ ସମ୍ବଲପୁରରୁ ସେଇ ରାତିରେ ଚାଲି ଆସିଲେ ଆମକୁ ଦେଖିବାକୁ । ମୋତେ ଆହତ ଅବସ୍ଥାରେ ଦେଖି ଅଶ୍ରୁ ସଂବରଣ କରିପାରିଲେ ନାହିଁ ।

ମୋର ସ୍ତ୍ରୀ ବସନ୍ତ କୁମାରୀ ହୃଦ୍‌ରୋଗାକ୍ରାନ୍ତ ହୋଇପଡିଥିଲା ବେଳେ ସେ ସସ୍ତ୍ରୀକ ଦେଖିବାକୁ ଆସିଥିଲେ ଓ ତାଙ୍କର ବିୟୋଗ ପରେ ମତେ ଆସି ସାନ୍ତ୍ୱନା ଦେଇଥିଲେ । ମୁଁ ବିଧୁବାବୁଙ୍କର ସ୍ନେହ ସହାନୁଭୂତି ଭୁଲିପାରିବି ନାହିଁ । ଭଗବାନ ତାଙ୍କର ଆତ୍ମାର ସଦ୍‌ଗତି କରନ୍ତୁ ।

ପୂର୍ବତନ ପ୍ରଫେସର
ଇଂରାଜୀ ବିଭାଗ
ରେଭେନ୍‌ସା କଲେଜ କଟକ



# ଏକ ଅମ୍ଳାନ ବ୍ୟକ୍ତିତ୍ୱ

*ତ୍ରିଲୋଚନ ମିଶ୍ର*

ପ୍ରଫେସର ବିଧୁଭୂଷଣ ଦାସ ଆଉ ନାହାନ୍ତି । ସାହିତ୍ୟ, ଶିକ୍ଷା, କଳା, ସଂସ୍କୃତି- ସବୁ କ୍ଷେତ୍ରରେ ସେ ଥିଲେ ସମସ୍ତଙ୍କ ପାଇଁ ଜଣେ ନିର୍ଭରଯୋଗ୍ୟ ବିଶେଷଜ୍ଞ । ତାଙ୍କ ତିରୋଧାନରେ ଯେ କେତେ ବଡ଼ ଶୂନ୍ୟତା ସୃଷ୍ଟି ହେଲା, ତାହା କଳନା କରି ହେବ ନାହିଁ ।

ପ୍ରାଥମିକ ଭାବରେ ସେ ଥିଲେ ଇଂରାଜୀରେ ଅଗାଧ ପଣ୍ଡିତ । କିନ୍ତୁ କେବଳ ଇଂରାଜୀନୁହେଁ, ସବୁ ବିଷୟରେ ତାଙ୍କର ପାଣ୍ଡିତ୍ୟ ଥିଲା ଗଭୀର ଓ ବ୍ୟାପକ । ଆମ ଦେଶ ଓ ଦେଶ ବାହାରର ଯେତେ ଯେତେ ଅଧ୍ୟାପକମାନଙ୍କ ସଂସ୍ପର୍ଶରେ ମୁଁ ଆସିଛି, ମୋ' ବିଚାରରେ ସେ ହେଉଛନ୍ତି ସବୁଠାରୁ ଅଧିକ ପଢ଼ିଥିବା ଓ ଜାଣିଥିବା ଅଧ୍ୟାପକ । ଦେଶ ବିଦେଶରେ କୌଣସି ଭଲ ବହିଟିଏ ପ୍ରକାଶ ପାଇଲେ ସେ ତାକୁ ଯେମିତି ହେଲେ କିଣି ପଢୁଥିଲେ । ବୌଦ୍ଧିକତା ତାଙ୍କ ଜୀବନର ଆଦର୍ଶ ଥିଲା । ବୌଦ୍ଧିକତା ଓ ବ୍ୟାପକ ଅଭିଜ୍ଞତା, ଉଭୟର ସମନ୍ୱୟରେ ଗଢ଼ି ଉଠିଥିଲା ତାଙ୍କର ଅପୂର୍ବ ବ୍ୟକ୍ତିତ୍ୱ । ମୂଲ୍ୟବୋଧ, ଶୃଙ୍ଖଳା ଓ ମାର୍ଜିତ ରୁଚିର ସେ ଥିଲେ ଏକ ଜ୍ୱଳନ୍ତ ପ୍ରତୀକ ।

ରେଭେନ୍‌ସା କଲେଜରେ ପ୍ରଫେସର ଦାସଙ୍କ ଯୋଗଦାନ ସମୟରୁ ଓଡ଼ିଶାର ଇଂରାଜୀ ଶିକ୍ଷାରେ ନବଯୁଗର ସୂତ୍ରପାତ ହୁଏ । ତାଙ୍କ ପୂର୍ବରୁ ଇଂରାଜୀ ଅଧ୍ୟୟନ ଶବ୍ଦାର୍ଥ ଓ ବ୍ୟାଖ୍ୟା ମଧ୍ୟରେ ପର୍ଯ୍ୟବସିତ ଥିଲା । ଅକସ୍‌ଫୋର୍ଡ୍ ଓ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରି ସେ ନୂତନ ଆଲୋକ ଧରି ଆସିଲେ, ନୂତନ ଦିଗ୍‌ଦର୍ଶନ ଦେଲେ, ନୂତନ ପଦ୍ଧତି ପ୍ରଚଳନ କଲେ । ବିଶ୍ଳେଷଣ ମାଧ୍ୟମରେ ସାହିତ୍ୟକୁ ତର୍ଜମା କରି ତାହାର ଯଥାର୍ଥ ମୂଲ୍ୟ ଉଦ୍‌ଘାଟନ କରିବା ଓ ନୂତନ ନୂତନ ତଥ୍ୟର ସନ୍ଧାନ କରିବା ଏହି ପଦ୍ଧତିର ମୂଳ ଲକ୍ଷ୍ୟ ଥିଲା । ତାଙ୍କର ସହକର୍ମୀମାନେ ଏବଂ ସମୟାନୁକ୍ରମେ ଅଗଣିତ ଛାତ୍ରଛାତ୍ରୀ ଏହି ଧାରାଟି ଅନୁସରଣ କରି ଓଡ଼ିଶାଯାକର ଓ ବାହାରର ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଏହି ପଦ୍ଧତି ଜାରି ରଖିଛନ୍ତି । ସ୍କୁଲମାନଙ୍କ ପାଇଁ ପ୍ରଫେସର ଦାସଙ୍କର ଅବଦାନ କିଛି କମ୍ ନୁହେଁ । ସ୍କୁଲ୍‌ଗୁଡ଼ିକରେ ଆଧୁନିକ ଇଂରାଜୀ ସିଲାବସ୍ ଆରମ୍ଭ ହୁଏ ପଞ୍ଚମ ଦଶନ୍ଧିର ଶେଷ ଆଡକୁ ତାଙ୍କରି ପ୍ରଚେଷ୍ଟାରେ । ଆମେ କେତେଜଣ ପ୍ରଥମେ ତାଙ୍କଠୁଁ ଟ୍ରେନିଂ ନେଇଥିଲୁ । ପୁରୁଣା କାଳିଆ ପାଠ୍ୟପୁସ୍ତକ ଓ ପାରମ୍ପରିକ ଇଂରାଜୀ ବ୍ୟାକରଣ ବଦଳରେ ଆଜି ଯେଉଁ

ପାଠ୍ୟପୁସ୍ତକ ଓ ବ୍ୟାକରଣ ସ୍କୁଲ୍ ସ୍ତରରେ ପ୍ରଚଳିତ ଅଛି, ଏହାର ମୂଳଦୁଆ ପକାଇଥିଲେ ପ୍ରଫେସର ଦାସ । ସେ ଓଡ଼ିଶା ପାଇଁ ସାଂପ୍ରତିକ ଇଂରାଜୀ ଶିକ୍ଷାର ପ୍ରଜାତି ପୁରୁଷ ।

ଉପରୋକ୍ତ ନବଯୁଗର ପ୍ରଭାବ ସାହିତ୍ୟ ଓ କଳା କ୍ଷେତ୍ରରେ ଖୁବ୍ ସ୍ପଷ୍ଟ । ନିଜର ଅଧ୍ୟାପନାରେ ପ୍ରଫେସର ଦାସ ଛାତ୍ରମାନଙ୍କ ପାଇଁ ବିଶେଷ କରି ଏଲିଅଟ୍ଙ୍କ କବିତା ଓ ଲିଭିସ୍ଙ୍କ ସମାଲୋଚନାର ଧାରାକୁ ଆଧୁନିକତାର ଆଦର୍ଶ ରୂପେ ପ୍ରତିଷ୍ଠିତ କରନ୍ତି । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ପଚାଶ ଦଶକରେ ସେବର ତରୁଣ ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତି 'ନୂତନ କବିତା' ନାମକ ସଂକଳନ ପ୍ରକାଶ କରନ୍ତି, ଯେଉଁଥିରେ ଗୁରୁ ପ୍ରସାଦ ମହାନ୍ତି ଓ ଭାନୁଜୀ ରାଓଙ୍କ କବିତା ସ୍ଥାନିତ ହୁଏ । ଆମର ପ୍ରଖ୍ୟାତ କବିମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରଫେସର ଦାସଙ୍କର ଛାତ୍ର । ଯତୀନ୍ ବାବୁଙ୍କ 'ନୂତନ କବିତା' ଯେପରି କବିତାର ନୂତନ ଧାରା ସମ୍ବନ୍ଧରେ ସୂଚନା ଦିଏ, ଠିକ୍ ସେହିପରି ତାଙ୍କରି ସମ୍ପାଦିତ ପତ୍ରିକା 'ପ୍ରଜ୍ଞା' ସମାଲୋଚନା ସାହିତ୍ୟର ଏକ ନୂତନ ଦିଗନ୍ତ ଉନ୍ମୋଚିତ କରେ । 'ପ୍ରଜ୍ଞା'ର ମୂଳ ପ୍ରେରଣା ହେଉଛି ପ୍ରଫେସର ଦାସଙ୍କର ଏବଂ ସେ ନିଜେ ଏଥିରେ ଲେଖିଥିଲେ ଓ ଏହାର ପୃଷ୍ଠପୋଷକ ଥିଲେ ।

ନାଟ୍ୟ ଜଗତରେ ନୂତନତ୍ୱ ଆଣିବା ସକାଶେ ପ୍ରଫେସର୍ ଦାସଙ୍କ ପ୍ରଚେଷ୍ଟା ଅନେକଙ୍କୁ ହୁଏତ ଜଣା ନଥିବ । ରେଭେନ୍ସା କଲେଜ୍‌ରେ ମଞ୍ଚସ୍ଥ କରାଇବା ପାଇଁ ସେ ବଛା ବଛା ପାଶ୍ଚାତ୍ୟ ନାଟକର ଅନୁବାଦ କରାଇଥିଲେ । ୧୯୫୪ରୁ ୧୯୫୭ ପର୍ଯ୍ୟନ୍ତ ଏହି ନାଟକଗୁଡିକ ମଞ୍ଚସ୍ଥ କରାଯାଏ : 'ବୁଣାଳୀ' (ହପ୍ଟମାନ୍ଙ୍କ Weavers), 'ସଂଘର୍ଷ' (ଗଲ୍ସ୍‌ୱାର୍ଦ୍ଦିଙ୍କ Strife), 'ବଗିଚା' (ଚେକଭଙ୍କର Cherry Orchard ) ଏବଂ ଏକ ସ୍କାଉଣ୍ଡ୍ରେଲ୍‌ର ଡାଏରୀ (ଅଷ୍ଟ୍ରୋଭ୍‌ସିଙ୍କ Diary of a Scoundrel) । ଏହାକୁ ଏକ ପରୀକ୍ଷାମୂଳକ ପ୍ରୟୋଗ କୁହାଯାଇପାରେ ସତ, କିନ୍ତୁ ମନୋରଞ୍ଜନ ଦାସଙ୍କର 'ସାଗର ମନ୍ଥନ' (୧୯୬୪) ଭଳି ଅନୁବାଦ ପରି ଆଧାରିତ ସଫଳ ନାଟକ ବାହାରିଲା ପରେ ଅନୁବାଦର ସୁଫଳ ସମ୍ବନ୍ଧରେ ଆଉ ସନ୍ଦେହ ନାହିଁ । ଏପରି ପ୍ରୟୋଗ ମାଧ୍ୟମରେ ଯେଉଁ ଛାତ୍ରଛାତ୍ରୀମାନେ ନିଜ ନାଟ୍ୟ ପ୍ରତିଭାର ଆଦ୍ୟ ଅନୁଶୀଳନ କରିଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଆଜି ନାଟ୍ୟକାର, ନିର୍ଦ୍ଦେଶକ ଓ କଳାକାର ଭାବରେ ପରିଚିତ । ତିନିଟି ନାମ କହିଲେ ଯଥେଷ୍ଟ ହେବ- ସର୍ବଶ୍ରୀ ବିଶ୍ୱଜିତ୍ ଦାସ, ଅନନ୍ତ ମହାପାତ୍ର ଓ ସୁଷମା ତେଜ୍ ।

୧୯୬୮ରୁ ୧୯୮୦ ପର୍ଯ୍ୟନ୍ତ ସେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଥିଲେ । ଏହି କାଳଟି ତାଙ୍କର କର୍ମଘନ ଜୀବନ, ଯାହା ସମସ୍ତଙ୍କୁ ଊଣାଅଧିକେ ଜଣାଥିବ । କର୍ମ ବ୍ୟସ୍ତତା ସତ୍ତ୍ୱେ ସେ ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣା କାର୍ଯ୍ୟରେ ତିଳେ ମାତ୍ର ହେଳା

କରି ନାହାନ୍ତି । ଅବସର ଗ୍ରହଣ ପରେ ବି ସେ ଅବସର ନେଇ ନଥିଲେ । ଜାତୀୟ ଓ ଆନ୍ତର୍ଜାତୀୟ ସଂସ୍ଥାମାନଙ୍କ ସହିତ ସମ୍ପର୍କ ରଖିଥିଲେ ।

ବସ୍ତୁତଃ ସେ ଜଣେ ସର୍ବାଂଗୀନ ଶିକ୍ଷକ । ପ୍ରଫେସର୍ ଦାସଙ୍କ ମହାପ୍ରୟାଣ ଆମମାନଙ୍କ ପାଇଁ ଏକ ଦାରୁଣ ବିଚ୍ଛେଦ ।

୩୧୬, ସହିଦ ନଗର
ଭୁବନେଶ୍ୱର

# ଅର୍ଘ୍ୟ

**ବିଘ୍ନରାଜ ପଟେଲ**

ସାର୍ ଚାଲିଗଲେ । ଏତେ ଶୀଘ୍ର ଚାଲିଯିବେ ବୋଲି ଆମେ ଭାବିପାରି ନଥିଲୁଁ । ଆଗରୁ ଅନେକ ସାର୍, ଅନେକଙ୍କ ସାର୍ ଚାଲି ଯାଇଛନ୍ତି । ପରେ ବି ଅନେକେ ଯିବେ । ପ୍ରତି ମୁହୂର୍ତ୍ତରେ ଯାଉଛନ୍ତି ହଜାର ହଜାର ଲୋକ । କିନ୍ତୁ କେହି ଫେରୁନାହାନ୍ତି । କେହି କାହାକୁ ଫେରିବାର ଦେଖିନାହିଁ । ସାର୍ ଫେରି ଆସନ୍ତେ କି ? କେତେ ଖୁସି ନ ହୁଅନ୍ତୁ ଆମେ ! କେତେ ଖୁସି ନ ହୁଅନ୍ତା ଓଡ଼ିଶା !

କିଏ କହେ ସାର୍ ସବୁଦିନ ପାଇଁ ବିଦାୟ ନେଇଛନ୍ତି ? ଗୁରୁ ମରନ୍ତି ନାହିଁ । ସେ ସଦା ତାଙ୍କ ଶିଷ୍ୟଙ୍କ ମେଳରେ ରହିଥାନ୍ତି । ଗୁରୁ, ଗୁରୁ ତିଆରି କରନ୍ତି ଓ ଗୁରୁଙ୍କ ମଧ୍ୟରେ ଓ ଗୁରୁଶିଷ୍ୟ ପ୍ରକ୍ରିୟା ଜରିଆରେ ସବୁଦିନକୁ ରହିଥାନ୍ତି । ଏହା କେବଳ ପରମ୍ପରା ନୁହେଁ । ଏହା ମନୁଷ୍ୟତ୍ୱ ବିକାଶର ଏକ ଚିରନ୍ତନ ପ୍ରବାହ... ସେ ଅମର । ତାଙ୍କ ଶିକ୍ଷା ଅମୃତ । ସେଥିପାଇଁ ବୋଧହୁଏ ଭଗବାନଙ୍କ ଅନ୍ୟ ନାମ ଗୁରୁ ।

ତାଙ୍କ ଅଗଣିତ ଛାତ୍ରମାନଙ୍କ ମଧ୍ୟରୁ ଜଣେ ହୋଇପାରିଥିବାରୁ ମୁଁ ନିଜକୁ ଭାଗ୍ୟବାନ ମନେ କରେ । ୧୯୪୪ ମସିହାରେ ରେଭେନ୍‌ସା କଲେଜରେ ମୁଁ ପ୍ରଥମ ବର୍ଷ ଆଇ.ଏସ.ସି. କ୍ଲାସରେ ଭର୍ତ୍ତି ହୋଇଥିଲି । ସେତେବେଳେ ଋଷିପ୍ରତିମ ଅଧ୍ୟାପକ ଡ. ବଳଭଦ୍ର ପ୍ରସାଦ ଥିଲେ କେମେଷ୍ଟ୍ରି ବିଭାଗର ମୁଖ୍ୟ । ସେ ଛାତ୍ରମାନଙ୍କର ପ୍ରିୟ ଥିଲେ ଓ ଛାତ୍ରମାନେ ତାଙ୍କର ପ୍ରିୟ ଥିଲେ । 'ଭାରତ ଛାଡ' ଆନ୍ଦୋଳନ ବେଳେ ଲୋକନାୟକ ଜୟପ୍ରକାଶ ନାରାୟଣ କଟକରେ କିଛିଦିନ ପାଇଁ ତାଙ୍କ ଅତିଥି ଥିଲେ ଓ ତାଙ୍କ ଘରେ ରହୁଥିଲେ । ସେହିବର୍ଷ (୧୯୪୪) ବିଧୁବାବୁ, ଶ୍ରୀଯୁକ୍ତ ପ୍ରଫୁଲ୍ଲ ପତି ଓ ଶ୍ରୀ ନନ୍ଦ କିଶୋର ମିଶ୍ର ଇଂରାଜୀ ବିଭାଗରେ ଲେକ୍‌ଚରର ଭାବେ ଯୋଗ ଦେଇଥିଲେ । ସେତେବେଳେ ସମସ୍ତଙ୍କ ମହୁଁରେ ବିଧୁବାବୁଙ୍କ ପ୍ରଶଂସା ଶୁଣାଯାଉଥିଲା । ଏମ.ଏ. ପରୀକ୍ଷାରେ ପ୍ରଥମ କ୍ଲାସରେ ପ୍ରଥମ ହୋଇ କୃତକାର୍ଯ୍ୟ ହୋଇଥିବାରୁ ପାଟଣା ୟୁନିଭରସିଟି ତାଙ୍କୁ ସ୍ୱର୍ଣ୍ଣପଦକ ଦେଇ ସମ୍ମାନିତ କରିଥିଲେ । ଅଧ୍ୟାପକ ସୁନ୍ଦରମ୍ ଥା'ନ୍ତି ଇଂରାଜୀ ବିଭାଗର ମୁଖ୍ୟ ଓ ଶ୍ରୀଯୁକ୍ତ ଭି.ଭି. ଜନ୍ ଜଣେ ବରିଷ୍ଠ ଅଧ୍ୟାପକ । ଅଳ୍ପ ସମୟ ଭିତରେ ବିଧୁବାବୁ ସେମାନଙ୍କ ସମକକ୍ଷ ହୋଇପାରିଥିଲେ । ବିଜ୍ଞାନ ପଢୁଥିବା ଛାତ୍ରମାନେ ଜନ୍ ସାହେବ ଓ ବିଧୁବାବୁଙ୍କ କ୍ଲାସରେ ବସି ସେମାନଙ୍କ ବକ୍ତୃତାର ସ୍ୱାଦୁ ଉପଭୋଗ କରୁଥିଲେ । ସେତେବେଳେ ରେଭେନ୍‌ସା କଲେଜର ବାତାବରଣ

ଅତି ସ୍ୱଚ୍ଛ ଓ ଉପଭୋଗ୍ୟ ଥିଲା । ଅଧ୍ୟାପକମାନଙ୍କ କମନ ରୁମ୍ ଟାହି, ଟାପରା ଓ ହାସ୍ୟରସରେ ଉଲ୍ଲସିତ ଥିଲା । ହିଂସା, ଦ୍ୱେଷ ନଥିଲା ।

ଅଧ୍ୟାପକ ଓ ପ୍ରଶାସକ ତଥା ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ ଭାବେ ସେ ବହୁତ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ତାଙ୍କର ଯେଉଁ ଗୁଣ ମୋତେ ବିଶେଷ ଭାବରେ ମୁଗ୍ଧ ତଥା ପ୍ରଭାବିତ କରିଥିଲା, ତାହା ହେଲା- ଜ୍ଞାନ ପ୍ରତି ତାଙ୍କର ଅନୁରାଗ । ମୌଳିକ, ଆଧୁନିକ ଓ ଅତ୍ୟାଧୁନିକ ଚିନ୍ତାଧାରା ସହିତ ତାଙ୍କର ପରିଚୟ ଅତି ଘନିଷ୍ଠ ଥିଲା । ନୂଆ ହୋଇ ପ୍ରକାଶିତ ଓ ଗୁରୁତ୍ୱପୂର୍ଣ୍ଣ ଭାବଧାରାରେ ଶାଣିତ ପୁସ୍ତକଗୁଡିକ ପଢ଼ିବାରେ ତାଙ୍କର ଅତିଶୟ ଆଗ୍ରହ ଥିଲା । ତାଙ୍କର ଅନେକ ଭାଷଣ ଭିତରୁ ଗୋଟିଏ ମୋର ମନେ ପଡେ - ସେ ଭାଷଣର ବିଷୟବସ୍ତୁ ଥିଲା 'ଭାବ' (Idea) । ଅବଶ୍ୟ ଅନେକଟା ମୁଁ ବୁଝିପାରି ନଥିଲି । କିନ୍ତୁ ସେ ବକ୍ତୃତା ଶୁଣୁଥିଲାବେଳେ ତାଙ୍କ ଜ୍ଞାନର ଗଭୀରତା ଓ ପାଣ୍ଡିତ୍ୟ ମୋତେ ଅଭିଭୂତ କରିଥିଲା । ତାଙ୍କ ଛାତ୍ର ବତ୍ସଳତା: ସେ ତାଙ୍କ ଛାତ୍ରମାନଙ୍କୁ ଅତିଶୟ ସ୍ନେହ କରୁଥିଲେ ଓ ସେମାନଙ୍କ ବିକାଶ ଓ ପ୍ରଗତି ପାଇଁ ସଦା ଯତ୍ନବାନ ଥିଲେ । ପରବର୍ତ୍ତୀ କାଳରେ ମଧ୍ୟ ସେ ସେମାନଙ୍କର ଖବର ରଖୁଥିଲେ ଓ ସୁଖ ଦୁଃଖରେ ଭାଗୀ ହେଉଥିଲେ । ଡ. ବଳଭଦ୍ର ପ୍ରସାଦଙ୍କ ପରି ସେ ବି ମୋତେ ମୋ ନାଁ'ରେ (First Name) ଡାକୁଥିଲେ ଓ ମୋ ନମସ୍କାର ହସି ହସି ଗ୍ରହଣ କରୁଥିଲେ ଏବଂ ମୋର ଭୁଲ ଭଟ୍‌କା ସୁଧାରୁଥିଲେ, ଅତି ସ୍ନେହରେ, ଆଦରରେ ଯେପରି ମୋ ମନରେ ଦୁଃଖ ନ ହୁଏ । ସେ ସବୁବେଳେ ମୋ ଶିକ୍ଷକ ଥିଲେ ଓ ରହିଥିବେ । ସେ ହସ ହସ ମୁହଁ ସଦା ମୋ ସ୍ମୃତିରେ ଏକ ଅମୂଲ୍ୟ ସମ୍ପଦ ହୋଇ ରହିଥିବ ।

ଗଙ୍ଗନଗର, ଭୁବନେଶ୍ୱର

# ସାର୍

**ଯତୀନ୍ଦ୍ର ମୋହନ ମହାନ୍ତି**

ସାର୍‌ଙ୍କ ସହିତ ମୋର ପ୍ରଥମ ପରିଚୟ ୧୯୫୧ ମସିହାରେ । ସେ ବିଲାତରୁ ଫେରି ଆସିଥାନ୍ତି । ମୁଁ ରେଭେନ୍‌ସା କଲେଜରେ ଇଂରାଜୀ ଏମ୍.ଏ.ର ଛାତ୍ର । ସେ ଇଂରାଜୀ ବିଭାଗରେ ଯୋଗ ଦେଇ ଆମକୁ ପଢ଼େଇବା ଆରମ୍ଭ କଲେ । ଏମ୍.ଏ.ରେ ସେତେବେଳେ ଆମେ ଅଳ୍ପ ଛାତ୍ର । କବି ଭାନୁଜୀ ରାଓ ମୋର ସହାଧ୍ୟାୟୀ ଥାଆନ୍ତି । ଭାନୁଜୀଙ୍କ ସହିତ ସାର୍‌ଙ୍କର ଆଗରୁ ପରିଚୟ ଥିଲା । କିନ୍ତୁ ମୋ ସହିତ ପରିଚୟ ସେଇଠୁ ଆରମ୍ଭ ହେଲା । ପ୍ରଥମେ ପ୍ରଥମେ ଗୁରୁଶିଷ୍ୟର ସମ୍ପର୍କ, କ୍ଲାସ୍‌ର ପଢ଼ାପଢ଼ି ନେଇ ଆଲୋଚନା, ବହିପତ୍ର ନେଇ ଆଲୋଚନା- ଜଣେ ଭଲ ଓ ଉତ୍ସାହୀ ଶିକ୍ଷକର ନୂଆ ନୂଆ ଜାଣିବାକୁ ଇଚ୍ଛା କରୁଥିବା ଜଣେ ଛାତ୍ର ପ୍ରତି ଯେଉଁ ଆଗ୍ରହ, ସେହି ଆଗ୍ରହରୁ । କିନ୍ତୁ ଗୋଟିଏ ଲେଖାଲେଖି ଘଟଣାରୁ ଶ୍ରେଣୀ ଗୃହରେ ଲୌକିକ ସମ୍ପର୍କ ହଠାତ୍ କିଛି ପରିମାଣରେ ଘନିଷ୍ଠ ହୋଇଗଲା । ଦିନେ କ୍ଲାସ୍‌ରେ ସାର୍ ଗୋଟିଏ ବହି ଆଣି ଦେଖେଇଲେ । ବହିଟି ସେ ସମୟର ପରିଚିତ କବି ଓ ଆଲୋଚକ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କର । ବିଚ୍ଛନ୍ଦବାବୁ ଉପେନ୍ଦ୍ର ଭଞ୍ଜ ସାହିତ୍ୟର ପ୍ରଚାର ପାଇଁ ଗୋଟିଏ ଅନୁଷ୍ଠାନ କରି, ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୁଦ୍ଧ କରି, ଭଞ୍ଜ ସାହିତ୍ୟର ପ୍ରସାର ଓ ପ୍ରଚାର ପାଇଁ ଯତ୍ନ କରୁଥାନ୍ତି । ବିଚ୍ଛନ୍ଦବାବୁ ଉପେନ୍ଦ୍ର ଭଞ୍ଜଙ୍କର କିଛି କବିତାର ନିଜେ ଇଂରାଜୀ ଅନୁବାଦ କରି ସେ ବହିଟିରେ ଛାପିଥାଆନ୍ତି । ଯାହା ମନେହୁଏ, ଭଞ୍ଜଙ୍କର ସେଇଟି ବୋଧହୁଏ ପ୍ରଥମ ଇଂରାଜୀ ଅନୁବାଦ । ସାର୍ ବହିଟି ଆମକୁ ଦେଲେ, କହିଲେ, ''ଉପେନ୍ଦ୍ର ଭଞ୍ଜଙ୍କର ଇଂରାଜୀ ଅନୁବାଦ ହେଲା, ଭଲ ହେଲା । ଏ ବହିଟି ପଢ଼, ଅନୁବାଦ କେମିତି ହୋଇଛି ଗୋଟିଏ ରିଭ୍ୟୁ ଲେଖ ।'' କ୍ଲାସ ପରେ ସାର୍ ଚାଲିଗଲେ । ମୋ ସାଙ୍ଗମାନେ ସେ ବହିଟି ମୋତେ ଧରେଇଦେଲେ, କହିଲେ, ''ତୁ ଲେଖ ।'' ମୁଁ ଆଗରୁ ଅଳ୍ପ ଅଳ୍ପ ଲେଖା ଲେଖି କରୁଥିଲି । କିନ୍ତୁ ହଠାତ୍ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଲେଖିବାକୁ ଭୟ ଲାଗିଲା । ପୁଣି ସାର୍ ଦେଖିବେ । ତଥାପି ଦୁଇତିନି ଦିନ ଟଳମଟଳ କଲା ପରେ ଲେଖିଦେଲି । ମନେ ମନେ ଭରସା ଥାଏ, ସାର୍ ବୋଧେ ବହିକଥା ଭୁଲିଯିବେ ତେଣୁ ମୁଁ ଏଆଡୁ ସେଆଡୁ ଲେଖିଛି, ଆଉ ତାଙ୍କୁ ଦେଖେଇବାକୁ ହବନି । ଲେଖାଟି ମୁଁ ଖାତା ଭିତରେ ଲୁଚେଇ କରି ରଖିଥାଏ । କିନ୍ତୁ ହଠାତ୍ ଦିନେ ଦଶ-ବାର ଦିନ ପରେ, କ୍ଲାସରେ ପଢ଼ଉ ପଢ଼ଉ ସାର୍ ପଢ଼ା ମଝିରେ ରହିଗଲେ । ଟିକେ କଅଣ

ଭାବିଲେ । କହିଲେ, ''ଆଚ୍ଛା, ମୁଁ ତୁମକୁ ବିଚ୍ଛନ୍ଦ ବାବୁଙ୍କର ସେ ଉପେନ୍ଦ୍ର ଭଞ୍ଜ ଅପବାଦ ବହିଟା ଦେଇଥିଲି କି ?'' ଭାନୁଜୀ ମୋ ଆଡକୁ ହାତ ଦେଖେଇ କହିଲେ, ''ଯତି ପାଖରେ ଅଛି ।'' ସାର୍ ମୋ ଆଡକୁ ଚାହିଁଲେ । ମୋ ମୁହଁଟା ବୋଧହୁଏ ଆଶଙ୍କାରେ ବିବ୍ରତ ଦିଶୁଥିଲା । ସାର୍ ସାମାନ୍ୟ ହସି ପଚାରିଲେ, ''କଅଣ ହଜିଗଲା କି ?'' ମୁଁ ତରବର ହୋଇ କହି ପକେଇଲି ''ନା ସାର୍, ମୁଁ ଲେଖିଦେଇଛି ।'' ''ଗୁଡ୍ ବୟ୍'' ସାର୍ କହିଲେ । ମୁଁ ଲେଖାଟି ଖାତାରୁ କାଢ଼ି ବଢ଼େଇଦେଲି । ସାର୍ ପଢୁଥିବା ବହିଟା ଆଡେଇ ଦେଇ ଚୁପ୍‌ଚାପ୍ ଲେଖାଟି ପଢ଼ିଦେଲେ । ତା' ପରେ ଶେଷକୁ କଅଣ ଲେଖିଲେ ଓ ମୋ ଲେଖାଟି ମୋ ଆଡକୁ ବଢ଼େଇ ଦେଲେ । କହିଲେ, ''ନିଅ, ବହୁତ ଭଲ ହୋଇଛି ।'' ତା'ପରେ ସାର୍ ସେଦିନର ରୁଟିନ୍ ପଢ଼ା ଆଉ ପଢ଼େଇଲେ ନାହିଁ । ତା'ପରେ ପ୍ରାୟ ଚାଳିଶ ମିନିଟ୍ ଧରି ଅନୁବାଦ ଓ ଅନୁବାଦତତ୍ତ୍ୱ ବିଷୟରେ ଆମକୁ ବୁଝେଇଲେ । କ୍ଲାସ ସରିଲା ପରେ ଆମେ ସାର୍ କଣ ଲେଖିଛନ୍ତି ଦେଖିଲୁ । ଯା' କହିଲେ ସେଇଆ ଲେଖିଛନ୍ତି ଓ ଲେଖାଟିର ଉଚ୍ଚ ପ୍ରଶଂସା କରିଛନ୍ତି । କିନ୍ତୁ ସେଇ ଗୋଟିଏ ଘଟନାରେ ମୋର ସଂକୋଚ ଭାଙ୍ଗିଗଲା । ଲେଖାଲେଖି କରିବାକୁ ମୋର ଆଗ୍ରହ ଥିଲା । ମନରେ ଦମ୍ଭ ଓ ସାହସ ଆସିଲା । ପରେ ସାର୍‌ଙ୍କ ସହିତ କିଛି କିଛି ଘନିଷ୍ଠତା ହେଲା ପରେ ମୁଁ ଥରେ ସେ କଥା କହିଥିଲି । ସାର୍‌ଙ୍କର ଠିକ୍ ମନେଥିଲା । ସେ କହିଲେ, '' ତୁମେ ଠିକ୍ ଲେଖିଥିଲ । ମୁଁ ଭାବୁଛି, ମୁଁ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ କିଛି ଲେଖାଲେଖି କରିବି ।'' ହାୟ, ସେ କଥା ସମ୍ଭବ ହେଲାନାହିଁ । ଭାବୁଛି, ସାର୍ ଯଦି ନିଜେ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଲେଖିଥାନ୍ତେ, ସେ କି ଆଲୋଚନା ନ ହୋଇଥାନ୍ତା ! ପ୍ରାଚୀନ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଗୋଟାଏ ନୂଆ ଦିଗନ୍ତ ଖୋଲିଯାଇଥାନ୍ତା ।

ଓଡ଼ିଆ ସାହିତ୍ୟ ସମ୍ପର୍କରେ ସାର୍‌ଙ୍କର ଯଥେଷ୍ଟ ଆଗ୍ରହ ଥିଲା । ବିଶେଷ କରି ପ୍ରାଚୀନ ଓଡ଼ିଆ ସାହିତ୍ୟ ବିଷୟରେ ସାର୍‌ଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଓ ପ୍ରାଚୀନ କବିମାନଙ୍କର ଅଧିକାଂଶ ବହି ସେ ସଂଗ୍ରହ କରିଥିଲେ ଓ ପଢ଼ାପଢ଼ି କରୁଥିଲେ । ମୁଁ ଲକ୍ଷ୍ୟ କରିଛି, ମୁଁ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଯେତେବେଳେ ଯାହା ଲେଖୁଥିଲି, ସାର୍ ଖବର ରଖୁଥିଲେ ଓ ବନ୍ଧୁ ପରି ମୋ ସହିତ ଖୋଲାଖୋଲି ଆଲୋଚନା କରୁଥିଲେ । ଥରେ କହିଲେ, ''ଯତି, ତୁମେ କୃଷ୍ଣ ପାଣିଗ୍ରାହୀଙ୍କର ସାରଳା ଦାସଙ୍କ ସମ୍ପର୍କରେ ଲେଖା ଦେଖୁଛ କି ?'' ପ୍ରବନ୍ଧଗୁଡିକ 'ଝଙ୍କାର'ରେ ବାହାରୁଥାଏ । ମୁଁ କହିଲି, ''ହଁ'' । ସାଙ୍ଗେ ସାଙ୍ଗେ ପ୍ରଶ୍ନ-''ତୁମର ମତ କଅଣ ?'' ମତେ ପାଣିଗ୍ରାହୀଙ୍କର ଲେଖା ଖୁବ୍ ସୁବିଧା ଲାଗୁ ନଥାଏ, କାରଣ ସେ ସାରଳାଙ୍କର ଯେଉଁ ପାଠ ଉପରେ ନିର୍ଭର କରି ନିଜର ଆଲୋଚନା କରୁଥାନ୍ତି, ସେ ପାଠର ଶୁଦ୍ଧତା ବିଷୟରେ ମୋର

...ଅଷ୍ଟ ସନ୍ଦେହ ଥାଏ । ମୁଁ ସେଇକଥା ସାର୍‌ଙ୍କୁ କହିଲି । ସାର୍ କହିଲେ, " ତୁମେ ଯାହା କହୁଛ ଠିକ୍ । କିନ୍ତୁ ପାଠ ଖୁବ୍ ଶୁଦ୍ଧ ନହେଲେ ବି, ପାଣିଗ୍ରାହୀଙ୍କର ଐତିହାସିକ ଆଲୋଚନାର ଧାରା ଓଡ଼ିଶାରେ ନୂଆ । ଆମ ପାଠକମାନେ ଐତିହାସିକ ଧାରା ସମ୍ପର୍କରେ ଜାଣିବା ଦରକାର ।" ପରେ ପରେ ସେ ଐତିହାସିକ ସମାଲୋଚନାର ପ୍ରଣାଳୀ ସମ୍ପର୍କରେ ଦୀର୍ଘ ସମୟ ଆଲୋଚନା କଲେ ।

ସାର୍‌ଙ୍କର ଜ୍ଞାନର ପରିମାପ କରିବା ଆମ୍ଭମାନଙ୍କର ପକ୍ଷରେ ସମ୍ଭବ ନଥିଲା । ସେହିପରି ତାଙ୍କର ବିଚାର ବୁଦ୍ଧିର ପରିସୀମା ଅକଳ୍ପନୀୟ । ଏପରି କୌଣସି ବିଷୟ ନଥିଲା ଯେଉଁଥିରେ ତାଙ୍କର ଜ୍ଞାନ ଯେ କୌଣସି ବିଶେଷଜ୍ଞର ଜ୍ଞାନଠାରୁ କମ୍ ଥିଲା ।

ପରିଶେଷରେ, ନଚିକେତାଙ୍କର ତୃତୀୟ ପ୍ରଶ୍ନର ଉତ୍ତରରେ ଯମ ଯାହା ଉତ୍ତର ଦେଇଥିଲେ, ମୁଁ ତାକୁ ହିଁ ଉଦ୍ଧାର କରୁଛି- ଯେ, ବିଭିନ୍ନ ଦେହରେ ଅଶରୀରି ରୂପରେ ବିଦ୍ୟମାନ ଏବଂ ଅନିତ୍ୟ ବସ୍ତୁ ସମୂହରେ ନିତ୍ୟ ରୂପରେ ବିରାଜମାନ ସେହି ସୁବିଶାଳ ସର୍ବବ୍ୟାପୀ ଆତ୍ମାକୁ ସାକ୍ଷାତ କରି ଧୀମାନ ବ୍ୟକ୍ତି ଶୋକହୀନ ହୁଏ । ସାର୍ ସେହି ଧୀମାନ ବ୍ୟକ୍ତି ସେ ସୁବିଶାଳ ଓ ସର୍ବବ୍ୟାପୀ ଆତ୍ମାକୁ ପ୍ରତ୍ୟକ୍ଷ କରିଥିଲେ । ପ୍ରାର୍ଥନା, ସେହି ମୁକ୍ତ ଆତ୍ମାର ସ୍ମୃତି ଆମ୍ଭମାନଙ୍କୁ ଧୀଶକ୍ତି ସମ୍ପନ୍ନ କରୁ ।

ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର୍
ଉତ୍କଳ ବିଶ୍ୱବିଦ୍ୟାଳୟ



# ପ୍ରାର୍ଥନାମୟ ଓ ପଠନମୟ ଜୀବନ

*ସୂର୍ଯ୍ୟକାନ୍ତ ଦାସ*

ବହୁ ବର୍ଷ ହେଲା ସମସ୍ତେ ତାଙ୍କୁ ପ୍ରଫେସର୍ ବି. ଦାସ୍ ବୋଲି ଜାଣନ୍ତି । ଦିଲ୍ଲୀରେ ଜାଣନ୍ତି, ଓଡ଼ିଶାରେ ଜାଣନ୍ତି, ନାଗାଲାଣ୍ଡରେ ଜାଣନ୍ତି, ମଣିପୁର ବିଶ୍ୱବିଦ୍ୟାଳୟରେ ବି ଜାଣନ୍ତି । ପ୍ରଫେସର ବି. ଦାସଙ୍କୁ ଓଡ଼ିଶା ବାହାରେ ଅତି ପାଖରେ ନାଗାଲାଣ୍ଡ କୋହିମାରେ ତାଙ୍କ ବାସଭବନରେ ଯେଉଁ ଦିନ ସକାଳେ ମୁଁ ପ୍ରଥମେ ଦେଖିଲି, ସେ ପ୍ଲାଷ୍ଟିକ୍ ଚାଙ୍ଗୁଡିଟିଏ ଧରି ଫୁଲ ତୋଳୁଥିଲେ । ଓଡ଼ିଶାରେ ପ୍ରଫେସର ଦାସଙ୍କୁ ଅତି ନିକଟରେ ଦେଖିବା ସୁଯୋଗ ନଥିଲା, କେବଳ ଦୂରରେ ଥାଇ ପରିଚିତ ହୋଇଥିଲି । କୋହିମାରେ ପାଖରେ ତାଙ୍କୁ ଦେଖିପାରିଲି ।

ସକାଳେ ପ୍ରାତଃ ସ୍ନାନ ଉତ୍ତାରୁ ତାଙ୍କର ସର୍ବ ପ୍ରଥମ କାମ ହେଲା ଫୁଲ ତୋଳିବା । ତା'ପରେ ପୂଜା ଆରାଧନା । ପୂଜା ନକରି ସେ ରହିପାରନ୍ତି ନାହିଁ । ତାଙ୍କ ଜୀବନ ହେଉଛି ପ୍ରାର୍ଥନାମୟ ଜୀବନ ଏବଂ ପଠନମୟ ଜୀବନ । ତାଙ୍କ ବ୍ୟକ୍ତିତ୍ୱର ପରିପୂର୍ଣ୍ଣତା ହେଉଛି ପ୍ରାର୍ଥନା ଓ ପଠନ, ଅଧ୍ୟୟନ । ସକାଳେ ଓ ସନ୍ଧ୍ୟାରେ ପ୍ରତିଦିନ ସେ ପୂଜା କରନ୍ତି । ତନ୍ମୟ ହୋଇ ପୂଜାରେ ବସନ୍ତି । ପୂଜା ଶେଷ କଲେ ସେ ଶାନ୍ତି ଓ ସନ୍ତୋଷ ପାଆନ୍ତି । ଭାଗବତ୍ ଆରାଧନାରେ ନିଜକୁ ଲିପ୍ତ କରୁଥିବାରୁ ତାଙ୍କୁ ପ୍ରସନ୍ନ ବଦନରେ ଦେଖିବାକୁ ଆପଣ ପାଇବେ ।

ନାଗାଲାଣ୍ଡ ସରକାର ତାଙ୍କୁ ୧୯୮୬ ସାଲରେ ନିମନ୍ତ୍ରଣ କରି ନେଇଥିଲେ। ନାଗାରାଜ୍ୟରେ ଗୋଟିଏ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାକୁ ସରକାର ଆଗ୍ରହୀ ହୋଇ ପ୍ରଫେସର ବି.ଦାସଙ୍କୁ ଶିକ୍ଷା ପରାମର୍ଶଦାତା ନିଯୁକ୍ତ କରିଥିଲେ । ବିଶ୍ୱବିଦ୍ୟାଳୟ ଗଠନ ନିମିତ୍ତ କେନ୍ଦ୍ର ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟ ନିକଟରେ ଦାଖଲ କରିବାକୁ ଉପଯୁକ୍ତ ପ୍ରସ୍ତାବ ଓ କାଗଜପତ୍ର ପ୍ରସ୍ତୁତ କରିଦେବା ଥିଲା ପ୍ରଫେସର ବି. ଦାସଙ୍କ ଦାୟିତ୍ୱ ।

ସେଇ କାମରେ ବ୍ୟସ୍ତ ଥିବାବେଳେ ସୁଦ୍ଧା ପ୍ରଫେସର ବି.ଦାସ ସବୁଦିନ ସକାଳେ ପୂଜା ଲାଗି ଫୁଲ ସଂଗ୍ରହ କରିବାକୁ ବାହାରି ପଡୁଥିଲେ । ଗୋଟିଏ ପାହାଡ ଉପରେ ଥିବା ନୂତନତମ ଅଟ୍ଟାଳିକା ଥିଲା ତାଙ୍କର ସରକାରୀ ବାସଭବନ । ସେଇ ପାହାଡର ଆହୁରି ଉଚ୍ଚ ଅଂଶରେ ଆଉ ଗୋଟିଏ ଘରେ ମୁଁ ରହୁଥିଲି । ତାଙ୍କୁ ଘରୁ ବାହାରି ପାହାଡ ଉପରକୁ ପ୍ରାୟ ୭୦/୭୫ ପାହାଚ ଚଢ଼ି ପାହାଡିଆ ଶିଡିରେ ମୋ ଘରକୁ ଆସି ପ୍ରଫେସର ବି. ଦାସ ମୋ ହତାରୁ ଫୁଲ ନେଉଥିଲେ । ମୁଁ ପ୍ରସ୍ତାବ ଦେଇଥିଲି, 'ଆପଣ

...ାଡ ଚଢ଼ି କଷ୍ଟ କରି ଉପରକୁ ଆସିବେ କାହିଁକି; ମୁଁ ପାହାଚରେ ଓହ୍ଲେଇବା ସହଜ ହେବ । ତେଣୁ ପ୍ରତିଦିନ ସକାଳେ ମୁଁ ଫୁଲ ଆଣି ଆପଣଙ୍କ ନିକଟରେ ପହଞ୍ଚାଇ ଦେଇଯିବି ।'

ପ୍ରଫେସର ବି. ଦାସଙ୍କ ସେବା କରିବା ଦ୍ୱାରା ପରୋକ୍ଷରେ ଭଗବତ୍ ସେବା କରିବା ସୁଯୋଗ ପାଇବା ଥିଲା ମୋର ଆନ୍ତରିକ ଅଭିଳାଷ । ନାଗାଲାଣ୍ଡ ସରକାରଙ୍କ ଶିକ୍ଷା ପରାମର୍ଶଦାତା ଉଚ୍ଚ ପଦବୀରେ ନିଯୁକ୍ତ ଥିବାରୁ ପ୍ରଫେସର ଦାସ୍ଙ୍କ ଅଧୀନରେ ଦରଓ୍ୱାନ ଥିଲେ, ମାଳି ଥିଲେ, ପୂଝାରୀ ବି ରହିଥିଲା । କିନ୍ତୁ ଠାକୁର ପୂଜା ଲାଗି ଫୁଲ ସଂଗ୍ରହ କାମ ସେ ନିଜେ ହିଁ କରିବାକୁ ସୁଖ ମଣୁଥିଲେ ।

ନିଜକୁ ଭଗବାନଙ୍କଠାରେ ସମର୍ପଣ କରି ଦେଇଥିବାରୁ ପ୍ରଫେସର ଦାସଙ୍କ ହୃଦୟ କରୁଣାରେ ପରିପୂର୍ଣ୍ଣ । ହସ ହସ ବଦନରେ ସେ ସମସ୍ତଙ୍କ କୁଶଳ ଜିଜ୍ଞାସା କରନ୍ତି । ସହାନୁଭୂତି ହେଉଛି ତାଙ୍କର ବ୍ୟକ୍ତିତ୍ୱର ଗୋଟିଏ ବଡ ଗୁଣ । ପ୍ରଫେସର ଦାସ ଓଡ଼ିଶାର ଡି.ପି.ଆଇ ହୋଇଥିବା ବେଳେ ତାଙ୍କ ଅଫିସରେ କାମ କରୁଥିବା କୌଣସି ଚିହ୍ନା ବ୍ୟକ୍ତି ରୋଗରେ ପୀଡିତ ହୋଇପଡିଲେ ପ୍ରଫେସର ଦାସ ନିଜେ କଟକ ମେଡିକାଲ କଲେଜ୍ ଯାଇ ଖବର ଅନ୍ତର ବୁଝାବୁଝି କରୁଥିଲେ । ଜଣଙ୍କର 'ଅଲ୍ସର' ଅପରେସନ୍ ହୋଇଥିଲା । ପ୍ରତିଦିନ ଡାକ୍ତରଖାନା ଯାଇ ପ୍ରଫେସର ଦାସ ତାଙ୍କୁ କୁଶଳ କାମନା ଜଣାଉଥିଲେ । ପରେ ତାଙ୍କର କେତେକ କର୍ମଚାରୀ କାର୍ ଦୁର୍ଘଟଣାରେ ସମ୍ମୁଖୀନ ହୋଇଥିଲେ । ପ୍ରଫେସର ଦାସ ଜଣ ଜଣ କରି ସମସ୍ତଙ୍କ ଘରକୁ ଯାଇ ଶୋକାଭିଭୂତ ପରିବାରକୁ ସାନ୍ତ୍ୱନା ଦେଇଥିଲେ ।

ହୋମିଓପ୍ୟାଥିକ୍ ଚିକିତ୍ସାରେ ସେ ପ୍ରବୀଣ । ନାଗାଲାଣ୍ଡରେ ଥିବା ଜନୈକ ବଡ ଅଫିସର ତାଙ୍କ ପିଲାଛୁଆଙ୍କ ଅସୁସ୍ଥତା ସମୟରେ ପ୍ରଫେସର ବି.ଦାସଙ୍କୁ ଟେଲିଫୋନ କରି ବୁଝି ନେଉଥିଲେ କେତେ ଘଣ୍ଟା ଉତ୍ତାରୁ କେଉଁ ଔଷଧ ଦିଆଯିବ । ସେ ଜାଣିଥିଲେ, ପ୍ରଫେସର ବି. ଦାସଙ୍କ ସନ୍ଧ୍ୟା ପ୍ରାର୍ଥନା କେଉଁ ସମୟରେ ଶେଷ ହୁଏ । ସେହି ସମୟ ଆସିଗଲେ, କୋହିମାରେ ତାଙ୍କ ଟେଲିଫୋନ ବାଜି ଉଠେ । ଅନେକ ଥର !

ପ୍ରାୟ ଦୁଇବର୍ଷ ତାଙ୍କ ନିକଟ ସମ୍ପର୍କରେ ଆସିବା ଉତ୍ତାରୁ ପ୍ରଫେସର ବି. ଦାସ ବିରକ୍ତି ପ୍ରକାଶ କରିବା କେବଳ ଥରେ ମୁଁ ଲକ୍ଷ୍ୟ କରିଥିଲି । ନର୍ଥଇଷ୍ଟର୍ଣ୍ଣ ହିଲ୍ ୟୁନିଭରସିଟି ଭାଇସ୍-ଚାନ୍ସେଲର କୋହିମା କ୍ୟାଂପସ ଗସ୍ତରେ ଆସିଥିଲେ । ତାଙ୍କ ରାତ୍ରିଭୋଜନ ନିମିତ୍ତ ବ୍ୟବସ୍ଥା କରାଯାଇଥିଲା । ଯେଉଁ ଗୁର୍ଖା ରାନ୍ଧୁଣିଆ ଥିଲା, ତାକୁ ରାତି ଆଠଟା ବେଳକୁ ପ୍ରଫେସର ଦାସ ପଚାରିଲେ, 'କ'ଣ କ'ଣ ଖାଦ୍ୟ ପ୍ରସ୍ତୁତ ହୋଇଛି ?' ସେ କହିଲା- 'ରୋଟି, ଡାଲ୍, ଦୁଇ ଶବ୍ଜି, କ୍ଷିରୀ, ପାମ୍ପଡ । ପ୍ରଫେସର ଦାସ ବିଗିଡ଼ିଲେ । କହିଲେ, ଭାଇସ୍-ଚାନସେଲର ଆଜି ରାତିରେ ଆମ ସଙ୍ଗେ ଖାଇବେ; ଖାଲି ଦୁଇଟା ସବ୍ଜି କରିଛ ? ଯାଅ, ଯାଅ, ତୁରନ୍ତ ଆଉ ଦୁଇ ପ୍ରକାର ଶବ୍ଜି ବନାଅ ।'

ପରେ ମୁଁ ଜାଣିଲି ପ୍ରଫେସର ବି. ଦାସ ଯାହାଙ୍କୁ ଅତିଥି ମର୍ଯ୍ୟାଦା ଦେଉଛନ୍ତି, ତାଙ୍କୁ ଏକାନ୍ତ ଅସାଧାରଣ ଆନ୍ତରିକତାର ସହିତ ଚର୍ଚ୍ଚା କରିବାକୁ ଚାହାନ୍ତି । ଅତିଥିଙ୍କୁ ନିତି ଦିନିଆ ଖାଦ୍ୟ ଦିଆଯାଇପାରେ ନା । ଏଇଥିଲାଗି ସେ ରାନ୍ଧୁଣିଆ ଉପରେ ଖପ୍ପା ହୋଇଥିଲେ । ପ୍ରଫେସର ବି. ଦାସଙ୍କ ନିଜର ଖାଦ୍ୟ ଅତି ସାଧାରଣ ଓ ସିଧାସାଧା । କିନ୍ତୁ ଅତିଥିଙ୍କୁ ସେ ଦେବାକୁ ଚାହାନ୍ତି ଦିବ୍ୟଭୋଜନ ।

ଦିନର ଚବିଶ ଘଣ୍ଟାରୁ ପ୍ରାୟ ଆଠ ଦଶ ଘଣ୍ଟା ପ୍ରତିଦିନ ସେ ବହି ପଢ଼ନ୍ତି । ତେଣୁ ଜ୍ଞାନବିଜ୍ଞାନରେ ସେ ଅତୁଳନୀୟ । ତାଙ୍କର ଅସାମାନ୍ୟ ପାଣ୍ଡିତ୍ୟ ରହିଛି । ସାହିତ୍ୟ, ସଙ୍ଗୀତ, ଚାରୁକଳା, ବିଜ୍ଞାନ, କ୍ରୀଡା କସରତ ସବୁଥିରେ ତାଙ୍କର ଗଭୀର ଜ୍ଞାନ ଅଛି । ପ୍ରଫେସର ବି. ଦାସ କେତେ ଯେ ପଢ଼ନ୍ତି, ତାହା କଳନା କରି ହେବ ନାହିଁ । ସାରା ରବିବାର ଅପରାହ୍ନ, ଏବଂ ପ୍ରତ୍ୟେକଟି ଛୁଟି ଦିନରେ ଦିନସାରା, ଏବଂ ସନ୍ଧ୍ୟାରେ ସେ କଟାନ୍ତି ପୁସ୍ତକ ଓ ପତ୍ରପତ୍ରିକା ପଠନରେ । କେଉଁ ବିଦ୍ୟାରେ ତାଙ୍କର ପ୍ରବେଶ ନାହିଁ, କହିବା କଷ୍ଟକର । ତାଙ୍କ ଦୂରଦୃଷ୍ଟି ଯେପରି ସୁଦୂରପ୍ରସାରୀ, ଅନ୍ତର୍ଦୃଷ୍ଟି ସେହିପରି ସୁଗଭୀର । ସେ ଜଣେ ଉଚ୍ଚକୋଟୀର ବିଦ୍ୱାନ ଓ ବାଗ୍ମୀ । କୌଣସି ପ୍ରସଙ୍ଗରେ ସେ ବକ୍ତୃତା ଦେଉଥିବା ବେଳେ ଯେପରି ପ୍ରାଞ୍ଜଳ ଆଲୋଚନା କରନ୍ତି, ବିଭିନ୍ନ ପଠିତ ପୁସ୍ତକ ଅବତାରଣା କରନ୍ତି, ତହିଁରୁ ଜଣାଯାଏ ତାଙ୍କର ରହିଛି ପ୍ରଖର ସ୍ମରଣଶକ୍ତି, ଅପର୍ଯ୍ୟାପ୍ତ ଅନୁଚିନ୍ତା ଓ ଅନୁଭୂତି । ତାଙ୍କ ବକ୍ତୃତା ମୁଁ ମନ୍ତ୍ରମୁଗ୍ଧ ହୋଇ ଶୁଣେ । ମନରେ ଇର୍ଷା ଆସେ, ଭଗବାନ ଏପରି ଅଦ୍ଭୁତ ଶକ୍ତିରୁ ମୋତେ ବଞ୍ଚିତ କରିଛନ୍ତି । ପରିହାସ, ରସିକତା ତାଙ୍କ ବକ୍ତୃତାରେ ପ୍ରସ୍ଫୁଟିତ ହୁଏ; କଥୋପକଥନରେ ଇଂରାଜୀରେ "ଇଣ୍ଟେଲେକ୍‌ଚ୍ୟୁଆଲ୍ ଡିସ୍‌କସନ୍" କୁହାଯାଏ, ସେଥିରେ ବି. ଦାସ ପାରଙ୍ଗମ ଥିଲେ ।

ପିଲାଦିନେ ବିଧୁଭୂଷଣ ତାଙ୍କ ଭାଇଭଉଣୀ ମିଶି ୧୩ ଜଣଙ୍କ ସହିତ ଏକାଠି ଚଳିଛନ୍ତି । ସମସ୍ତଙ୍କ ମଧ୍ୟରେସେ ହେଉଛନ୍ତି ଜ୍ୟେଷ୍ଠ । ବଡ ପୁଅ ରୂପେ ସେ କୌଣସି ସ୍ୱତନ୍ତ୍ର ସୁବିଧା ଏକଚାଟିଆ ଉପଭୋଗ କରିବାକୁ ଚାହୁଁନଥିଲେ । ଯାହା କିଛି ଭଲ ଜିନିଷ ତାଙ୍କୁ ଦିଆଯାଉଥିଲା, ସବୁ ଭାଇ ଭଉଣୀଙ୍କ ମଧ୍ୟରେ ସୁବଣ୍ଟନ କରିବାକୁ ପିଲାଦିନରୁ ସେ ଶିଖି ନେଇଛନ୍ତି । ମାତ୍ର ପନ୍ଦର ବର୍ଷ ବୟସରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଅନୁଗୁଳ ହାଇସ୍କୁଲରେ ତାଙ୍କୁ ସେତେବେଳେ ପାଠ ପଢ଼ାଇଥିବା ଇଂରାଜୀ ଶିକ୍ଷକ ଶ୍ରୀ କେ.ଏନ୍. ରାଓ କହନ୍ତି, ବିଧୁଭୂଷଣ ବୁଦ୍ଧିମାନ ପିଲା ଥିଲେ; ଏକଦମ୍ ସୁନାପିଲା ଥିଲେ । ତାଙ୍କ ପୁରାତନ ଛାତ୍ର ଓଡ଼ିଶାର ଡି.ପି.ଆଇ. ହୋଇ ପାରିଥିବାରୁ କେ.ଏନ୍. ରାଓ ନିଜକୁ ଭାଗ୍ୟବାନ ମନେ କରନ୍ତି । ଏବେ କେ.ଏନ୍.ରାଓ ଗୁଜରାଟ୍ ବରୋଦାରେ ରହୁଛନ୍ତି । କିନ୍ତୁ ଜୀବନରେ ସତ୍ ପୁରୁଷ ଗଢ଼ିପାରି ଦେଇଥିବାରୁ ସେ ଆନନ୍ଦିତ । ପ୍ରବଳ ମେଧାବୀ ଛାତ୍ର ରୂପେ

ଶେଷରେ ବିଧୁଭୂଷଣ ଇଂରାଜୀରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ କରିଥିଲେ । ସମୟକ୍ରମେ କଲମ୍ବିଆ ବିଶ୍ୱବିଦ୍ୟାଳୟ ଏବଂ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରିବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ।

ପ୍ରଫେସର ବି.ଦାସ ଡି.ପି.ଆଇ ରୂପେ, ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍ ସଦସ୍ୟ ରୂପେ, ଭାଇସ-ଚାନସେଲର ରୂପେ ଓଡ଼ିଶାର ଶିକ୍ଷା ଜଗତରେ ଅନେକ ନୂତନ ଦିଗ୍‌ଦର୍ଶନ ଦେଇ ପାରିଛନ୍ତି । ମୋତେ ବିଶେଷ ଅନୁପ୍ରାଣିତ କରିଛି ତାଙ୍କର ଗୋଟିଏ ମୌଳିକ ଚିନ୍ତାଧାରା । ସେ କହନ୍ତି, 'ବିଶ୍ୱବିଦ୍ୟାଳୟ ଅଭିଜ୍ଞ ପ୍ରଫେସରମାନେ ବେଳେ ବେଳେ ଯାଇ ସହରରେ ଥିବା କଲେଜମାନଙ୍କ ପ୍ରଥମ ବର୍ଷ ଛାତ୍ରମାନଙ୍କର କ୍ଲାସ୍ ନେବା ଉଚିତ୍ । ଯିଏ ଯେତେ ବଡ ଅଭିଜ୍ଞ ପ୍ରଫେସର, ସିଏ ସେତେ ଛୋଟ ପିଲାଙ୍କୁ ଶିକ୍ଷାଦାନ କରି ଛାତ୍ରମାନଙ୍କୁ ଉଦ୍‌ବୋଧିତ କରିବା ଉଚିତ୍ ।' ତାଙ୍କର ଏହି ଚିନ୍ତାଧାରା ସହିତ ମୁଁ ସମ୍ପୂର୍ଣ୍ଣ ଏକମତ ।

ଆମର ଧାରଣା, ବଡ ବଡ ପ୍ରଫେସରମାନେ କେବଳ ପୋଷ୍ଟଗ୍ରାଜୁଏଟ ଶ୍ରେଣୀରେ ପଢ଼ାଇବେ । କେବଳ ଗବେଷଣା କରିବେ । ପ୍ରଫେସର ଦାସ କହନ୍ତି, 'ପୋଷ୍ଟ ଗ୍ରାଜୁଏଟ୍ କ୍ଲାସରେ ପଢ଼ାଉଚ, ପଢ଼ାଉଥାଅ, ଯାଅ ଟିକିଏ ଜ୍ଞାନ ବିତରଣ କରି ଦେଇ ଆସ ଛୋଟ କଲେଜ୍ ଫାଷ୍ଟ ଇଅର୍ ଛାତ୍ରଛାତ୍ରୀଙ୍କ ମଧ୍ୟରେ । ଗବେଷଣା ଲବ୍ଧ ଜ୍ଞାନକୁ ବିଚ୍ଛୁରିତ କର । ତାହା ତୁମ ଜ୍ଞାନ ଗାରିମାକୁ ପ୍ରକାଶିତ କରାଇବ, ଛାତ୍ରମାନଙ୍କ ମଧ୍ୟରେ ଜ୍ଞାନାଲୋକ ପ୍ରଜ୍ୱଳିତ କରିଦେବ ।'

ଡି.ପି.ଆଇ ହୋଇଥିଲା ବେଳେ ପ୍ରଫେସର ବି.ଦାସ କହୁଥିଲେ, ପ୍ରତ୍ୟେକ କଲେଜ ଅଧ୍ୟାପକ ଆଗାମୀ ସପ୍ତାହରେ ଆଗାମୀ ମାସରେ କି କି ବିଷୟ ପଢ଼ାଇବାକୁ ଚାହାନ୍ତି ତାହାର ପରିକଳ୍ପନା ଲିପିବଦ୍ଧ କରି ଛାତ୍ରଙ୍କୁ ଆଗତୁରା ଯୋଗାଇ ଦିଅନ୍ତୁ । କେବଳ ଲେକ୍‌ଚର ବିଷୟ ବସ୍ତୁ ହାଓ୍ୱାରେ ଭାସି ନଯାଉ । ଛାତ୍ରଛାତ୍ରୀଙ୍କ ମନଧ୍ୟାନ ଆକୃଷ୍ଟ ହେଉ । ଅଧ୍ୟାପକଙ୍କ ଦାୟିତ୍ୱବୋଧ ବ୍ୟାପକ କରିବାକୁ ସେ ବିବିଧ ମାର୍ଗ ପ୍ରଦର୍ଶନ କରାଇଛନ୍ତି । ପ୍ରଫେସର ବି.ଦାସଙ୍କ ସ୍ୱୟଂସିଦ୍ଧ ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ଆମ ଶିକ୍ଷା ଜଗତରେ ନୂତନ ଉନ୍ମାଦନା ଓ ପ୍ରେରଣା ଜାଗି ଉଠନ୍ତା । ତାଙ୍କ ଚିନ୍ତାଧାରା ଗତାନୁଗତିକ ନଥିଲା ଏହା ଅଭିନବ । ଅତ୍ୟନ୍ତ ବାସ୍ତବଧର୍ମୀ ଏବଂ ଉପାଦେୟ ଚିନ୍ତାଧାରା ।

ଅବସରପ୍ରାପ୍ତ ଅଧ୍ୟାପକ
ବାଣିଜ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ



# ସାର୍ -ବିଧୁଭୂଷଣ ଦାସ

*ଦେବୀ ପ୍ରସନ୍ନ ପଟ୍ଟନାୟକ*

ସାର୍ ଚାଲିଗଲେ । ବିଧୁବାବୁଙ୍କ ମୃତ୍ୟୁ ସାଙ୍ଗରେ ଓଡ଼ିଶାରେ ଶିକ୍ଷା ଓ ସଂସ୍କୃତିର ଗୋଟିଏ ଯୁଗ ଶେଷ ହୋଇଗଲା । ଇଂରାଜୀ ଭାଷା ଓ ସାହିତ୍ୟ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଓଡ଼ିଶାର ପ୍ରତିନିଧି ଭାବରେ ଗୋଟିଏ ନାଁ ଓଡ଼ିଶା ବାହାରେ ପରିଚିତ ଥିଲା । ତାହା ହେଉଛି ବିଧୁଭୂଷଣ ଦାସ ।

ବିଧୁବାବୁ ମୋର ସିଧାସଳଖ ମାଷ୍ଟ୍ର ନଥିଲେ । ଖ୍ରୀଷ୍ଟ କଲେଜ୍‌ରେ ଆଇ.ଏ. , ବି.ଏ. ପଢ଼ି ରେଭେନ୍‌ସା କଲେଜରେ ଓଡ଼ିଆ ଏମ.ଏ ପଢ଼ିଥିବାରୁ ବିଧୁବାବୁଙ୍କର ଛାତ୍ର ହେବାର ସୁଯୋଗ ମତେ ମିଳିନଥିଲା । ବିଧୁବାବୁ ମୋର ବନ୍ଧୁ ରାଜେନ୍ଦ୍ର ପ୍ରସାଦ ଦାସ ଓ ଯତୀନ୍ଦ୍ର ମୋହନ ମହାନ୍ତିଙ୍କର ମାଷ୍ଟ୍ର ଥିଲେ । ତାଙ୍କୁ ମାଷ୍ଟ୍ରର ସମ୍ମାନ ଦେବା ପାଇଁ ମୋ ପକ୍ଷରେ ଏହା ଯଥେଷ୍ଟ ଥିଲା । ସେ ମଧ ମୋ ଉପରେ ତାଙ୍କର ସ୍ନେହ ଓ ଆଶୀର୍ବାଦ ଢ଼ାଳିବାରେ କାର୍ପଣ୍ୟ କରିନାହାନ୍ତି ।

ଏମ୍.ଏ. ପାଶ କଲାପରେ ମାତ୍ର ଦେଢ଼ମାସ ବଲାଙ୍ଗୀର କଲେଜ୍‌ରେ ରହିଲା ପରେ ପଇଁଚାଳିଶ ବର୍ଷ ଓଡ଼ିଶା ବାହାରେ ରହି ଓଡ଼ିଶା ଫେରି ଆସିଲି । ତେଣୁ ବିଧୁବାବୁଙ୍କ ସାଙ୍ଗରେ ପ୍ରତିଥର ଆସିବାରେ ଅଳ୍ପ ଅଳ୍ପ ସମୟ ପାଇଁ ଦେଖାହୁଏ । କିନ୍ତୁ ସେଇ ଅଳ୍ପ ସମୟର ସ୍ନେହ ବନ୍ଧନ ମତେ ତାଙ୍କର ଅନ୍ତରଙ୍ଗ କରିଦେଇଥିଲା ।

ମୋ ଚାକିରୀ ଜୀବନର ପ୍ରଥମ ଏଗାର ବର୍ଷ ଓଡ଼ିଆ ଅଧ୍ୟାପକ (ଲେକ୍‌ଚରର) ଭାବରେ କଟିଲା । ତେଣୁ ଶିକ୍ଷିତ ଓଡ଼ିଆଙ୍କ ମନରେ ମୋର ସେଇ ଲେକଚରର ରୂପ ଛାପି ହୋଇ ରହିଗଲା । ସମ୍ବଲପୁରରେ ଓଡ଼ିଆ ପ୍ରଫେସର ଇଣ୍ଟରଭ୍ୟୁ । କୁଞ୍ଜ ବିହାରୀ ତ୍ରିପାଠୀ, ବିଧୁବାବୁ ଓ ମୁଁ ଏକ୍ସପାର୍ଟ । ବିଧୁବାବୁ ଓ ମୁଁ ତାଙ୍କ ଗାଡିରେ ସମ୍ବଲପୁର ଯାଉ ଯାଉ ବାଟରେ ପ୍ରାର୍ଥୀମାନଙ୍କ କଥା ପଡିଲା । ମୁଁ କହିଲି କୁଞ୍ଜ ବିହାରୀ ଦାଶ ଆସିଲେ ତାଙ୍କୁ ପ୍ରଶ୍ନ ନପଚାରି ସିଧାସଳଖ ବାଛିନେଲେ ଭଲ ହେବ । ଆମେ ସମ୍ବଲପୁରରେ ପହଞ୍ଚିଲୁ । ସେଠି ଶୁଣିଲି ଯେ ବିଧୁବାବୁ ଓ ରାଧାମୋହନ ଗଡନାୟକ ଆସି ପହଞ୍ଚିଛନ୍ତି । କିନ୍ତୁ ସେମାନେ ଗାଳି ଦେଉଛନ୍ତି ଯେ ଦେବୀ କୁଞ୍ଜବାବୁଙ୍କ ପାଖରେ ଲେକ୍‌ଚରର୍ ଥିଲା । ସିଏ ବଛାବଛି କମିଟିର ସଭ୍ୟ, ସେଇ କମିଟି ଆଗରେ ପୁଣି କୁଞ୍ଜବାବୁ ପ୍ରାର୍ଥୀ ହୋଇ ଛିଡା ହେବେ ? ମୋତେ ଦୁଃଖ ଲାଗିଲା । କୁଞ୍ଜ ବିହାରୀ ତ୍ରିପାଠୀ କହିଲେ, ବିଧୁ ମୋର ଛାତ୍ର । ମୁଁ ତାଙ୍କ ଆଗରେ ଠିଆ ହେବାରେ ମତେ ତ

ଙ୍କୁ ଭଲ ଲାଗେ ନାହିଁ । ମୋର ମନେ ଅଛି ଭାରତୀୟ ଭାଷା ସଂସ୍ଥାନର ପ୍ରଥମ ଉପଦେଷ୍ଟା କମିଟି ବୈଠକରେ ଭାରତର ପ୍ରାକ୍ତନ ଶିକ୍ଷାମନ୍ତ୍ରୀ ଓ ସେତେବେଳର ମହୀଶୂର ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀମାଳୀ ପ୍ରସ୍ତାବ ଦେଲେ ଯେ ସଂସ୍ଥାନର ଆଡାହକ ନିଯୁକ୍ତି ପାଇଁ ଗଢ଼ା ଯାଉଥିବା କମିଟିର ସଭାପତି ସିଏ ହେବା ଉଚିତ୍ । ସେ ସମୟର ଶିକ୍ଷାମନ୍ତ୍ରୀ ଭି.କେ.ଆର. ଭି. ରାଓ କହିଲେ ଯେ ମୋ ଡିରେକ୍ଟର ଏହାର ସଭାପତି ହେବେ । ତାଙ୍କର ଯେଉଁପରି ଲୋକ ଦରକାର, ସିଏ ବାଛିବେ । ଶ୍ରୀମାଳୀଜୀ କହିଲେ ମୁଁ ଭାଇସ୍ ଚାନସେଲରଙ୍କ ପାଇଁ କହିଚି । ଭି.କେ.ଆର.ଭି ରାଓ ସାଙ୍ଗେ ସାଙ୍ଗେ କହିଲେ, ମୋ ଡିରେକ୍ଟର ଭାଇସ୍‌ଚାନସେଲରଙ୍କ ଠାରୁ କମ୍ ନୁହେଁ । ଆମେ ତାଙ୍କୁ ଭାଇସ୍‌ଚାନସେଲର୍ର୍ ପଦର ଦରମା ଦେଉଛୁ । ଏ ସବୁ ସତ୍ତ୍ୱେ ମୋ ମନ ମାନିଲା ନାହିଁ । ମୁଁ କହିଲି, କୁଞ୍ଜବାବୁ ଇଣ୍ଟରଭିଉ ଆସିଲେ ମୁଁ ଅଳ୍ପ କିଛି ସମୟ ପାଇଁ ବାହାରକୁ ବାହାରି ଯିବି । ବିଧୁବାବୁ କହିଲେ, ଦେବୀ ତମେ କ'ଣ ଦରଖାସ୍ତ କରି କମିଟିର ସଭ୍ୟ ହୋଇଚ ? ଆମେ ତୁମକୁ ନିମନ୍ତ୍ରଣ କରି ସଭ୍ୟ କରିଚୁ । ତେଣୁ ତମେ ବାହାରକୁ ଯିବା ପ୍ରଶ୍ନ ଉଠୁନାହିଁ । ଇଣ୍ଟରଭ୍ୟୁ ହେଲା । କୁଞ୍ଜବାବୁ ଆସିଲେ ନାହିଁ । ଗୋପାଳ ଚନ୍ଦ୍ର ମିଶ୍ର ପ୍ରଫେସର ହେଲେ । ଫେରିଲାବେଳେ ବିଧୁବାବୁ କହିଲେ, ସମ୍ବଲପୁରରେ ଯେଉଁ ଗାଳି ଦିଆଗଲା , ତାହା ତୁମକୁ ନୁହେଁ, ସମସ୍ତ କମିଟିକୁ ଗାଳି, ବିଶେଷ କରି ମତେ ଗାଳି । ବିଧୁବାବୁଙ୍କ ବଡ ପଣିଆ ଯେ ଶିକ୍ଷାର ମର୍ଯ୍ୟାଦା ପାଇଁ ସିଏ ବିଶେଷଜ୍ଞଙ୍କୁ ଗାଳି ଆପଣା ଉପରକୁ ନେଇ ସେମାନଙ୍କ ରକ୍ଷାକବଚ ରୂପେ ଠିଆ ହେଉଥିଲେ ।

ଇଏ ତ ଗଲା ଅଫିସ କଥା । ଗୋଟିଏ ବ୍ୟକ୍ତିଗତ କଥା କହେ । ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କର ବାହାଘର । କଥା ହେଲା ଯେ ବିଧୁବାବୁ ଆପଣା ଗାଡିରେ ବରକୁ ନେବେ । ଅଧ୍ୟାପକ ରାଜେନ୍ଦ୍ର ପ୍ରସାଦ ଦାସ ଓ ମୁଁ ତାଙ୍କ ସାଙ୍ଗରେ ଯିବୁ । ଯତୀନ ବାବୁଙ୍କ ବୁଢ଼ାବାପାଙ୍କ ଇଚ୍ଛା ଯେ ଦୁଇ କିଲୋମିଟର ଆଗରୁ ପ୍ରସେସନ ଆରମ୍ଭ ହେବ । ମୁଁ କହୁଥାଏ ଗାଁ ମୁଣ୍ଡରୁ -ଅତିବେଶୀ ହେଲେ ଅଧକିଲୋମିଟର ଆଗରୁ ପ୍ରସେଶନ ହେବ । ବରଯାତ୍ରୀମାନେ ବସ୍‌ରେ ଆସିବେ । ତେଣୁ ମୁରବୀମାନେ ମତେ ତାଗିଦ୍ କଲେ ଯେ ଆମେ ଯେମିତି ବାଜା ଆଲୁଅ ଥିବା ଜାଗାରେ ଅପେକ୍ଷା କରୁ । ମୁଁ ବିଧୁବାବୁଙ୍କୁ କହିଲି, ସାର୍, ଏଇ ଗାଡିର ନେତୃତ୍ୱ ଆପଣ ମତେ ଦିଅନ୍ତୁ । ବିଧୁବାବୁ ହସିଲେ । କହିଲେ, ହେଉ । ଯତୀନ ବାବୁଙ୍କ ମୁରବୀମାନେ ମତେ କହିଥିଲେ ଯେ ଗୋଟିଏ ଜମିଦାର ଘରେ ରହିବା ବ୍ୟବସ୍ଥା ହୋଇଚି । ମୁଁ ସେଇ ଗାଁରେ ଥିବା ଜଣେ ବନ୍ଧୁଙ୍କ ଘରେ ରହିବାର ବିକଳ୍ପ ବ୍ୟବସ୍ଥା କରିଥିଲି । ଆମ ଗାଡି ଦୁଇ ମାଇଲ ଆଗରୁ ବସିଥିବା ବାଜା ଆଲୁଅ ପାଖରେ ପହଞ୍ଚିଲା । ମୁଁ ବିଧୁବାବୁଙ୍କୁ କହିଲି, ଗାଡି ବନ୍ଦ କରନ୍ତୁ । ମୁଁ ଗାଡିରୁ ଓହ୍ଲେଇ ସେଇ ଲୋକମାନଙ୍କୁ ପଚାରିଲି, ତମେ କାହାକୁ ଅପେକ୍ଷା କରିଚ ? ସେମାନେ କହିଲେ, ଆମ ବରଯାତ୍ରୀ ଆସୁଛନ୍ତି । ମୁଁ ବିଧୁବାବୁଙ୍କୁ କହିଲି,

ଏଥର ଚାଲନ୍ତୁ । ଗାଁ ମୁଣ୍ଡରେ ଅପେକ୍ଷା କରିବା । ବରଯାତ୍ରୀ ବସ ପହଞ୍ଚିଲା । ଯେତେବେଳେ ସେମାନେ ଶୁଣିଲେ ଯେ ଜଣେ କିଏ ପଚରା ଉଚରା କରିଥିଲେ, ସେମାନେ କହିଲେ ଇଏ ଦେବୀର ଚାଲବାଜି । ଗାଁ ମୁଣ୍ଡରୁ ପ୍ରସେଶନ ଆରମ୍ଭ ହେଲା । ଘରଗେଟ୍ ଭିତରକୁ ପଶିବାକୁ ହେବ । ଜଣେ କହିଲା ଏ ଡ୍ରାଇଭର, ଗାଡି ଆଉ ଟିକିଏ ବୁଲା । ବିଧୁବାବୁଙ୍କ ମୁହଁରେ ଟିକିଏ ବି ପରିବର୍ତ୍ତନ ନାହିଁ । ବରଧରା ହେଲା । ବିଧୁବାବୁ ଜମିଦାରଙ୍କ ଘରକୁ ଗଲେ । ମୁଁ ବନ୍ଧୁଙ୍କ ଘରେ ବ୍ୟାଗ ରଖି ବିଧୁବାବୁଙ୍କୁ ଦେଖିବାକୁ ଆସିଲି । ଯେଉଁ ଜମିଦାରଙ୍କ ଘରେ ରହିବା ବ୍ୟବସ୍ଥା ହୋଇଚି, ସେ ଘରେ ଅନେକ ଦିନୁ କେହି ରହୁନଥିଲେ । ସନ୍ତସନ୍ତିଆ ଘରେ ଦରୀ ପଡିଛି । ବେଙ୍ଗ ଡେଉଁଛନ୍ତି । ସାର୍ ବସିଛନ୍ତି । ମୁଁ କହିଲି, ସାର୍ ଖାଉ ଖାଉ ତିନି ବାଜିଯିବ । ସେତେବେଳେ ଖାଇ ଆପଣଙ୍କ ଦେହ ଖରାପ ହେବା ମୁଁ ଚାହୁଁ ନାହିଁ । ଆପଣ କଟକ ଫେରି ଯାଆନ୍ତୁ । ସିଏ ଟିକିଏ ପ୍ରତିବାଦ କରିବାକୁ ଯାଉଥିଲେ । ମୁଁ ଏଇ ଗାଡିର ନେତା ବୋଲି ଆପଣ ମାନି ନେଇଥିଲେ । ବର୍ତ୍ତମାନ ମୋର ଅନୁରୋଧ ଆପଣ ଫେରିଯାଆନ୍ତୁ । ମୁଁ ଯତି ଭାଇଙ୍କୁ କହିଦେବି । ଫେରିବା ବ୍ୟବସ୍ଥା ଆମେ କରିବୁ । ବିଧୁବାବୁଙ୍କ ଛାତ୍ର ବାତ୍ସଲ୍ୟର ଇଏ ଗୋଟିଏ ସାନ ନମୁନା ।

ବିଧୁବାବୁଙ୍କ ପରି ଯୋଗ୍ୟ ଲୋକ ଓଡ଼ିଶାରେ ଦ୍ୱିତୀୟ ନଥିଲେ । ଭାରତୀୟ ଶିକ୍ଷା କ୍ଷେତ୍ରକୁ ଆସିଲେ ସିଏ ଯେ ଶିଖର ସ୍ଥାନକୁ ଆସିବେ, ଏ ବିଷୟରେ ମୋର ସନ୍ଦେହ ନଥିଲା । ମୁଁ ପ୍ରସ୍ତାବ କଲି ଯେ ସାର୍ ଭାରତ ସରକାରଙ୍କ ଜଏଣ୍ଟ ଏଜୁକେଶନ ଆଡଭାଇଜର ହୋଇ ଆସିବାକୁ ଚାହିଁଲେ ମୁଁ ଚେଷ୍ଟା କରିବି । ତାଙ୍କର ଏକାନ୍ତ ଆପଣାର ଜଣେ କହିଲେ, ସାର୍ ଗଲେ ଜଏଣ୍ଟ ନୁହେଁ ସିଧା ଏଜୁକେଶନାଲ ଆଡଭାଇଜର ହୋଇଯିବେ । ମୁଁ କହିଲି, ଏହା ମୋର ଅକ୍ତିଆର ବାହାରେ । ଦ୍ୱିତୀୟ ଘଟଣାଟି ଘଟିଲା ମୋ ସଂସ୍ଥାନର ଫେଲୋସିପ ବିଷୟରେ । ମୁଁ ନିଜେ ଯୋଗାଡ କରି ଭଲ ଲୋକଙ୍କୁ ଆଣୁଥିଲି । ଗାନ୍ଧିଙ୍କର ନୀତି ଓ ଭାରତର ଜଣେ ବିଶିଷ୍ଟ ଦାର୍ଶନିକ ରାମଚନ୍ଦ୍ର ଗାନ୍ଧି ଆମର ଫେଲୋ ହେଲେ । ଭାରତର ଅନ୍ୟତମ ବିଶିଷ୍ଟ ଇଂରାଜୀ ଅଧାପକ ସିଡି ନରସିହ୍ମାୟା ଆମର ଫେଲୋ ହେଲେ । ମୁଁ ଯେତେବେଳେ ସାରଙ୍କୁ ଫେଲୋସିପ ଗ୍ରହଣ କରିବା ପ୍ରସ୍ତାବ ଦେଲି ସେ କହିଲେ, ଦେବୀ ଫେଲୋସିପ୍ ଦେବ, ସାର୍ ନେବେ ? ମୋର ଲେକଚରର ଛବି ଏ ଯାଏ ବି ଓଡ଼ିଆ ବୁଦ୍ଧିଜୀବୀଙ୍କ ମନରୁ ଯାଇ ନଥିବା ମତେ ବ୍ୟଥା ଦେଲା ଯେମିତି, ମୁଁ ଯେ ସାରଙ୍କୁ ଓଡ଼ିଶାର ସଂକୀର୍ଣ୍ଣତା ଭିତରୁ ଭାରତୀୟ କ୍ଷେତ୍ରକୁ ଆଣିବାରେ ଅସଫଳ ହେଲି ତାହାର ବ୍ୟଥା ଅଧିକ ।

୧୯୭୦-୭୧ କଥା ହେବ କି କଅଣ । ଭାରତ ଶିକ୍ଷା ମନ୍ତ୍ରଣାଳୟ ପ୍ରତି ଭାଷାର ବିକାଶ ପାଇଁ କୋଟିଏ ଟଙ୍କା ଦେବାକୁ ସ୍ଥିର କଲେ । ସେଇ କମିଟିର ମୁଁ

ସଭ୍ୟ ଥିଲି । ଆଗତୁରା ଖବର ଦେଲେ ସରକାର ଆଗତୁରା ଯୋଜନା ତିଆରି କରିବେ । ଏଇଆ ଭାବି ମୁଖ୍ୟମନ୍ତ୍ରୀଙ୍କି ଚିଠି ଲେଖିଲି ଓ ପରେ ସିଏ ଆଉ ଏକ ଅଧ୍ୟାୟ । ବିଧୁବାବୁଙ୍କୁ ଅନୁରୋଧ କଲି । ତାଙ୍କ ଚେଷ୍ଟାରେ ପାଠ୍ୟ ପୁସ୍ତକ ସଂସ୍ଥା ଗଢ଼ା ହେଲା । କିନ୍ତୁ ଗୋଲ କଣାରେ ଚଉଖୁଣ୍ଟିଆ କାଠ ପୋତିଲା ପରି ଠିକ୍ କାମ ପାଇଁ ଠିକ୍ ଲୋକ ନରହିବାରୁ ଆନ୍ଧ୍ରକୁ କୋଟିଏ ଅଣତିରିଶ ଲକ୍ଷ ଦେଲାବେଳେକୁ ଓଡ଼ିଶା ମାତ୍ର ପଇଁତିରିଶୀ ଲକ୍ଷ ପାଇଥିଲା । ଏଥିପାଇଁ ସେ କାଳର ରାଜନୈତିକ କିମ୍ବା ଅମଲାତାନ୍ତ୍ରିକ ପରିବେଶ କେତେ ପରିମାଣରେ ଦାୟୀ, ସେକଥା ଗବେଷକମାନେ ସ୍ଥିର କରନ୍ତୁ ।

ବିଧୁବାବୁ ଶେଷ ଜୀବନରେ ନାଗାଲାଣ୍ଡ ବିଶ୍ୱବିଦ୍ୟାଳୟ ସ୍ଥାପନା ପାଇଁ କମିଶନ ନିଯୁକ୍ତ ହେଲେ । ତାଙ୍କ ସାଙ୍ଗରେ ମୋର ଉତ୍ତରପୂର୍ବାଞ୍ଚଳରେ ଦେଖା ହୋଇଥିଲା । ଯେତେବେଳେ ସେ ମୋତେ ଛାପା ହୋଇଥିବା ରିପୋର୍ଟର ଗୋଟିଏ କପି ଦେଲେ, ସେତେବେଳେ ତାଙ୍କ ମୁହଁରେ ସନ୍ତୋଷର ଆନନ୍ଦ ମୋ ମନପ୍ରାଣ ଛୁଇଁଗଲା ।

ବିଧୁବାବୁ ବହୁଲୋକଙ୍କ ପାଇଁ ବହୁକାମ କରିଯାଇଛନ୍ତି । ଓଡ଼ିଶାର ଅଧ୍ୟାପକମାନଙ୍କ ପାଇଁ ୟୁଜିସି ଦରମା ଆଣିବା ଏବଂ ସେମାନଙ୍କର ପେନସନ ସ୍ଥିର କରିବା ଏହାର ଉଦାହରଣ । ଏଥିପାଇଁ ତାଙ୍କୁ ବହୁଲୋକଙ୍କଠାରୁ ବହୁକଥା ଶୁଣିବାକୁ ହୋଇଚି । ମୋ ନିଜ ଅଭିଜ୍ଞତାରୁ ମୁଁ ଜାଣିଛି ଯେ ଯଦି ବିଧୁବାବୁ ଓଡ଼ିଶାର ସଂକୀର୍ଣ୍ଣତା ବାହାରେ ଆପଣା ଭବିଷ୍ୟତ ଖୋଜିଥାନ୍ତେ, ତେବେ ସେ ଯେ ଉନ୍ନତିର ଚରମ ସୀମା ଛୁଇଁଥାନ୍ତେ, ଏ ବିଷୟରେ ମୋର କୌଣସି ସନ୍ଦେହ ନାହିଁ ।

କଳିଙ୍ଗ ହସ୍‌ପିଟାଲରେ ଜୀବିତ ଅବସ୍ଥାରେ ଶେଷଥର୍ ପାଇଁ ସାର୍‌ଙ୍କୁ ଦେଖିଥିଲି । ସେ ଶୋଇଥିଲେ । ତାଙ୍କୁ ନଉଠେଇ ବାହାରକୁ ବାହାରିଗଲା ବେଳେ ତାଙ୍କର ଜଣେ ଭଉଣୀଙ୍କୁ ମୋ ନାଁ କହି ସାର୍ ଉଠିଲେ କହିଦେବାକୁ ଅନୁରୋଧ କରି ଆସିଲି । ସିଏ କହିଲେ କି ନାଇଁ ଜାଣେ ନାହିଁ । ମୁଁ ଯେତେବେଳେ ତାଙ୍କ ବରଫ ଉପରେ ଶୁଆ ହୋଇଥିବା ମର ଦେହକୁ ଦେଖିଲି, ସେତେବେଳେ ହତାଶା ଛାଇଗଲା ଯେ ଆଗରେ ଓଡ଼ିଶାର ଗୋଟିଏ ଯୁଗର ଶେଷ ଶ୍ରେଷ୍ଠ ସନ୍ତାନ ଆଖି ବନ୍ଦ କରି ଶୋଇଛନ୍ତି ।

ପୂର୍ବତନ ନିର୍ଦ୍ଦେଶକ
ଭାରତୀୟ ଭାଷା ସଂସ୍ଥାନ, ମହୀଶୂର



# ସ୍ମୃତି- ମଣିଷର, ବ୍ୟକ୍ତିତ୍ୱର

*ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା*

ତା ୨୧।୬।୯୯ ସନ୍ଧ୍ୟାରେ ଟିଭିରୁ ଶୁଣିଲି ପ୍ରଫେସର ବିଧୁଭୂଷଣ ଦାସଙ୍କ ପରଲୋକ ସମ୍ବାଦ । ପୂର୍ବାହ୍ଣରେ କଳିଙ୍ଗ ହସ୍‌ପିଟାଲରେ ତ୍ୟାଗ କଲେ ଶେଷ ନିଃଶ୍ୱାସ। ମୋଠୁ ବୟସରେ ଦୁଇବର୍ଷ ସାନ ।

ତାଙ୍କ ସହିତ ମୋର ପରିଚୟ ହେଲା ୧୯୫୮ରେ ରେଭେନ୍‌ସା କଲେଜରେ । ଇଂରାଜୀ ପ୍ରଫେସର ଥିଲେ ସେ । ଚେହେରା ସୁନ୍ଦର, ଗମ୍ଭୀର; ପ୍ରକୃତି ବି ଗମ୍ଭୀର । ତାଙ୍କ ବିଭାଗରେ ଅନ୍ୟମାନେ ଥାଆନ୍ତି: ଡଃ ଓବ୍ରାଏନ୍, ନନ୍ଦବାବୁ, ତ୍ରିଲୋଚନ ବାବୁ, ହରେନ୍ଦ୍ର ବାବୁ, ଯତୀନ୍ଦ୍ର ବାବୁ ପ୍ରମୁଖ । ସେ ଥିଲେ 'ରେଭେନ୍‌ସେଭିଆନ୍'ର ସମ୍ପାଦକ, ମୁଁ ଜଣେ ସହ-ସମ୍ପାଦକ ।

ଆର୍ଟସ୍ କମନ୍‌ରୁମ୍‌ରେ ଥାଏ ଗୋଟିଏ ବଡ ଗୋଲାକାର ଟେବୁଲ । ଚାରିପାଖେ ବସନ୍ତି ସିନିଅରମାନେ । ମୁଁ ଏକ ବାଦୁଡି ଅବସ୍ଥାର ଲୋକ । ବୟସଟା କେତେ ଆଗେଇ ଯାଇଥାଏ; ଅଥଚ ଲେକ୍‌ଚରର୍ ଜୀବନର ଅୟମାରମ୍ଭ, ତେଣୁ ଜୁନିଅରମୋଷ୍ଟ । ଦେବେନ୍ଦ୍ର ବାବୁ, ନନ୍ଦବାବୁ, ଶ୍ରୀରାମ ବାବୁ, ଶ୍ୟାମକୁମର ଚଟ୍ଟୋପାଧ୍ୟାୟ ପ୍ରମୁଖଙ୍କ ସହିତ ବେଶ୍ ମିଶୁଥିଲି । ସେମାନେ ଏକ ପ୍ରକାର ପ୍ରଶ୍ରୟ ଦେଉଥିଲେ ମୋତେ । କିନ୍ତୁ ପ୍ରଫେସର ଦାସଙ୍କ ପାଖରୁ ରହୁଥିଲି ପ୍ରାୟ ଦୂରରେ ।

ସେହି ୧୯୫୮ ମଇ ମାସରେ ଭଞ୍ଜ ଜୟନ୍ତୀରେ ମୋର ବକ୍ତବ୍ୟ ଶୁଣି ନନ୍ଦବାବୁ କିଛି ପ୍ରଭାବିତ ହେଲେ । ''He Talked Sense,'' ଥିଲା ତାଙ୍କ ଅଭିମତ । କେଜାଣି, ଓଡ଼ିଆଙ୍କର ମୁଖ୍ୟ ସମାଲୋଚକ ଇଂରେଜିବାଲାଏ ଏଥିରେ ମୋ ବିଷୟରେ ଟିକିଏ କୋମଳ ହୋଇଥିବେ ପରା ! ପରେ ପରେ 'ପ୍ରଜ୍ଞା' - ବିଧୁବାବୁଙ୍କ ଇଙ୍ଗିତରେ ପ୍ରକାଶିତ ପତ୍ରିକାରେ ଭାନୁଜୀ ରାଓଙ୍କ 'ସ୍ତନ' କବିତାର ଆଲୋଚନା ବି ଖୋରାକ୍ ଯୋଗାଇ ଥିବ । ତା ପରେ ଯତୀନ୍ ବାବୁଙ୍କ ଅନୁରୋଧରେ ଲେଖା ହେଲା ସେହି 'ପ୍ରଜ୍ଞା' ପାଇଁ 'ଭାରତୀୟ କାବ୍ୟତତ୍ତ୍ୱ'ର ପ୍ରଥମ ପ୍ରବନ୍ଧ । ବିଚାର ଥିଲା, ମୁଁ ଲେଖିଯିବି ଗୋଟାକ ପରେ ଗୋଟାଏ, 'ପ୍ରଜ୍ଞା' ଛପାଇ ଯିବ । ରେଭେନ୍‌ସା ଛାଡିଲି, 'ପ୍ରଜ୍ଞା' ବି ବନ୍ଦ ହେଲା । କିନ୍ତୁ ମୋ ଲେଖା ବନ୍ଦ ନହୋଇ ଅନ୍ୟତ୍ର ଛପା ହେଉଥାଏ । ଶେଷରେ ୧୯୭୮ରେ ମୋର 'ଅଳଙ୍କାର ପ୍ରସଙ୍ଗ' ପ୍ରକାଶିତ ହେବା ପରେ ଉପହାର ଦେଇଥିଲି ଖଣ୍ଡିଏ ବିଧୁବାବୁଙ୍କୁ । ସେତେବେଳେ ତାଙ୍କର ସ୍ମିତହାସ୍ୟ ସହ ଚକ୍ଷୁତାରକାର ସଞ୍ଚାଳନରେ

ସେ କହୁଥିଲେ- ''ଇଏ ସେଇ ! ପ୍ରଜ୍ଞା ଯୁଗର ସ୍ୱପ୍ନ କଣ ବାସ୍ତବ ହେଲା ?'' ମୁଁ ବି ନୀରବ ଇଙ୍ଗିତରେ ସମ୍ମତି ଜଣାଇଥିଲି । ରେଭେନ୍ସା ବେଳର ଅପର ପ୍ରବନ୍ଧ 'ଯଦୁମଣି ପ୍ରତିଭା ଓ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଏବଂ 'ରୀତିକାବ୍ୟ ଓ ରାଧାନାଥ' ମୋତେ ଏକ ଭିନ୍ନ ପ୍ରତିଷ୍ଠା ଆଣି ଦେଇଥିଲା । ରେଭେନ୍‌ସାର ଷ୍ଟାଫ୍ କମନ୍‌ରୁମ୍ ସେତେବେଳେ ଥିଲା ଓଡ଼ିଆ ସାହିତ୍ୟର ସମାଲୋଚନା କକ୍ଷ । ଯୋଉଠି ଯାହା ହୁଏ, ତାର ମୂଲ୍ୟ ନିରୂପିତ ହୋଇଯାଏ ପଦେ ଦି'ପଦରେ । ତାଛଡା ୧୯୬୦, ୬୧ର ଭଞ୍ଜ ଜୟନ୍ତୀ । କଟକ ଛାଡି ଆସିଲା ବେଳକୁ ସମସ୍ତେ ଗୋଟାଏ ଧାରଣା କରିଯାଇଥିଲେ ଯେ ମୋର ପ୍ରବନ୍ଧ ଓ ସମାଲୋଚନାରେ ସାଧନାର ସ୍ୱର ଥିଲା । ଗୋଟାଏ ସ୍ଥୂଳ ଧାରଣା ଅବଶ୍ୟ । ୧୯୬୩ରେ ' ସାହିତ୍ୟ ସମୀକ୍ଷଣ' ପ୍ରକାଶିତ ହେବା ପରେ ତାର ଆକାର ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ହୋଇଗଲା । ପ୍ରବନ୍ଧ, ବକ୍ତୃତାରେ ଯେଉଁ ପ୍ରଭାବ ସଂଚରିତ ବା ପ୍ରଚାରିତ ହୁଏ, ଛାପା ବହିରେ ସେ ହୁଏ ସଂକଳିତ ବା ସନ୍ତୁଳିତ । ସେହି ସାନ ବହିଟି 'ସାହିତ୍ୟ ସମୀକ୍ଷଣ' ମୋର ଜୀବନର ପ୍ରଥମ ସ୍ୱାକ୍ଷର । ଅନେକେ ମୋତେ ଚିହ୍ନିବାର ଅବଲମ୍ବନ । ପ୍ରଫେସର ଦାସଙ୍କୁ ସେଥିରୁ ଖଣ୍ଡିଏ ଦେବାରେ ମୋର ଆନନ୍ଦ ଥିଲା ।

ସେହି ଦିନଠାରୁ ସେ ମୋତେ ପ୍ରାୟ ମାନିଗଲେ । ବୟସ ଦୃଷ୍ଟିରୁ ଆମେ ପ୍ରାୟ ସମ- ସାମୟିକ । ଏକ ବିଶେଷ ପାରିବାରିକ ଅସ୍ୱଚ୍ଛଳତା ମୋର ଅନ୍ତରାୟ ହୋଇ ନଥିଲେ ରେଭେନ୍‌ସାରେ ଛାତ୍ର ଭାବରେ ଆମର ପୂର୍ବ ପରିଚୟ ଘଟିଥାଆନ୍ତା- ମୁଁ ଅଗ୍ରଜ, ସେ ଅନୁଜ ।

ବିଧୁବାବୁ ଡିପିଆଇ ହେଲେ । ତା ୨/୧୧/୧୯୬୯ରେ M.Sc.- Physics ଫଳ ଘୋଷଣା କଲେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ବୁଢ଼ାରଜା ହିଲ୍‌ସରେ । ପ୍ରଥମ ଶ୍ରେଣୀରେ ଥିଲେ ଦୁଇଜଣ ଝିଅ- ଆମ ଝିଅ ମୀରା ଆଉ ତାର ସହପାଠିନୀ ସ୍ନେହ । ରାତି ସାଢ଼େ ନ'ଟା ବେଳେ ତାଙ୍କ ମୌଖିକ ନିଯୁକ୍ତି ଆଦେଶ ମତେ-ଏ ଦୁହେଁ ସମ୍ବଲପୁର ମହିଳା କଲେଜରେ ନୂଆ ଖୋଲିଥିବା ବିଜ୍ଞାନ ବିଭାଗରେ ଯୋଗ ଦେଲେ ତହିଁ ଆରଦିନ ତା ୩/୧୧/୧୯୬୯ । ମୀରାକୁ ଅଳ୍ପ କେତେ ମାସ ପରେ ବଦଳି କଲେ ବ୍ରହ୍ମପୁର ଖଲ୍ଲିକୋଟ କଲେଜକୁ । ଆମର ଅସୁବିଧା କଥା ମୋଠୁ ଶୁଣିବା ପୂର୍ବରୁ ମୋତେ କହିଲେ, ''ମୀରା କଣ ମୋ ଝିଅ ନୁହେଁ ଉଦ୍‌ଗାତା ବାବୁ ? ଯାହା ଅସୁବିଧା ହେବ, ମୁଁ କ'ଣ ଅନୁମାନ କରିନି- ଆପଣ ମୀରା ସାଙ୍ଗରେ ଯାନ୍ତୁ; ମହିଳା କଲେଜ ଅଧ୍ୟକ୍ଷା ରମା ଦେ'ଙ୍କ ସହିତ ସାକ୍ଷାତ କଲାପରେ ବାକିକଥା ।'' ମହିଳା କଲେଜ୍ ହଷ୍ଟେଲରେ ମୀରା ରହିବା ଲାଗି ବ୍ୟବସ୍ଥା କରିଥିଲେ ସେ; କାରଣ ମୀରାକୁ ସେଇ ମହିଳା କଲେଜ୍‌ର ପ୍ରସ୍ତାବିତ ବିଜ୍ଞାନ ବିଭାଗ ପାଇଁ ସେ ମୂଳରୁ ଚିନ୍ତା କରିଥିଲେ । ସଂସ୍କୃତ କାଉନ୍‌ସିଲର ମେମ୍ବର ଭାବେ ମୁଁ ଅଧିକ ଘନିଷ୍ଠ ହେଲି । ସେଇ ମୀରାର

ସମ୍ବଲପୁର ବଦଳି ପ୍ରସଙ୍ଗରେ ତାଙ୍କ ଅଫିସରେ ବସି ଏକ ଭ୍ରାନ୍ତ ଧାରଣା ଉପରେ ଆଧାରିତ ତାଙ୍କ ବିଚାରକୁ ନିନ୍ଦା କରି କଠୋରଭାବେ ଯାହା କହିଥିଲି, ତାକୁ ନତମୁଖରେ ମାନିଥିଲେ ସେ । ନିଜର ଭାବନାରେ ସାମାନ୍ୟ ଦୋଷ ରହିଗଲେ ବିଧୁବାବୁ କେତେ ନିଷ୍ପ୍ରଭ ହୁଅନ୍ତି, ସେ ଦିନ ଦେଖିଥିଲି । ଯୁକ୍ତିବାଦୀ, ସ୍ୱାଭିମାନୀ ଲୋକ ନିଜ ବିଚାରରେ ନିଜ ଯୁକ୍ତିର ଦୁର୍ବଳତା ଓ ଭ୍ରମ ଦେଖିଲେ ସେହିପରି ଭାଙ୍ଗିପଡେ । କିନ୍ତୁ ବିଧୁବାବୁ ମୋତେ ଅନାଦର ତ କଲେ ନାହିଁ; ବରଂ ମୋ ସ୍ପଷ୍ଟବାଦିତାର ପୁରସ୍କାର ସ୍ୱରୂପ ମୋତେ ଟିକିଏ ଅଧିକ ଆଦର ମିଳିଲା । ତା ପରେ ଅନେକ ଥର ଆମର ଆଲୋଚନା ହୁଏ, ବିଶେଷତଃ ଶିକ୍ଷା ଆଉ ସାହିତ୍ୟ ନେଇ । ପଣ୍ଡିତ ଲୋକ ବିଧୁବାବୁ; ମେଧାବନ୍ତ ବହୁପାଠୀ; ବିଚାରରେ ନିରପେକ୍ଷ ମଧ୍ୟ । ପାଣ୍ଡିତ୍ୟପୂର୍ଣ୍ଣ ବିବାଦକୁ ଖୁବ୍ ଉଦାର ଚିତ୍ତରେ ଗ୍ରହଣ କରନ୍ତି ।

ସମ୍ବଲପୁର ସର୍କିଟ ହାଉସରେ ଥରେ (୧୯୭୨ ?) କଲେଜମାନଙ୍କରେ ଶୃଙ୍ଖଳା ସମସ୍ୟା ଆସିଗଲା । ଆଲେଚନାରେ ଯା କଥା ତା' କଥା ପଡିଲା ଦାୟିତ୍ୱ ସମ୍ପର୍କରେ । ମୁଁ କିନ୍ତୁ କହିଲି, ଡିପିଆଇ ମଧ୍ୟ ଦାୟୀ । ଯୁଦ୍ଧଂ ଦେହି ମୁଦ୍ରାରେ ସେ କହିଲେ, ''ମୋ ମୁଣ୍ଡରେ ବି ଠେଙ୍ଗା ?'' ''ଅନୁମତି ଦେଲେ..... ।'' ''ଅସଙ୍କୋଚରେ କହନ୍ତୁ, ସିଧା ସିଧା କହିବେ ।''

ଆରମ୍ଭ କଲି- ''ସାର୍ ! ଏ ଅଧ୍ୟାପକମାନଙ୍କୁ ପବ୍ଲିକ୍ ସର୍ଭିସ କମିଶନରେ ବସି ଆପଣ ବାଛୁଛନ୍ତି; କଣ୍ଟ୍ରୋଲ ବି ଆପଣଙ୍କ ହାତରେ । ଏଇଥିରୁ ଆପଣଙ୍କ ଦାୟିତ୍ୱ ପ୍ରଶ୍ନ ଉଠିଛି ମୋ ମନରେ । ପବ୍ଲିକ୍ ସର୍ଭିସ କମିଶନ୍‌ରେ ବସି ଦଶମିନିଟ୍‌ର ଇଣ୍ଟର୍‌ଭ୍ୟୁରେ ଭଲ ଲୋକ ଚିହ୍ନି ପକାଇବା ସହଜ କଥା ନୁହେଁ । ପଣ୍ଡିତ ତ ସବୁ ପ୍ରାର୍ଥୀ; ତାଙ୍କ ଦାୟିତ୍ୱବୋଧ, ବ୍ୟକ୍ତିତ୍ୱ ଏବଂ ଗାମ୍ଭୀର୍ଯ୍ୟ ଅବଧାରଣ କରିବାକୁ ଇଣ୍ଟରଭ୍ୟୁରେ ସମୟ ମିଳେ ମାତ୍ର ୧୦/୧୫ ମିନିଟ୍ । ବୃହସ୍ପତି ହେଲେମଧ୍ୟ ମଣିଷକୁ ସେତିକି ମୁହୂର୍ତ୍ତ ଦେଖି ଚିହ୍ନି ପକେଇବା ନିଶ୍ଚୟ କଷ୍ଟକର । ଅତଏବ ଯଥାର୍ଥ ଲୋକ ବଛାବଛିରେ ଭୁଲ ହେବା ଅସ୍ୱାଭାବିକ ନୁହେଁ । ଯଦି ଦୈବାତ୍ ଅବାଞ୍ଛିତ ଲୋକ ଆସିଗଲା ବୋଲି ଜଣା ପଡିଗଲା, ପ୍ରମାଣ ମିଳିଲା, ସେ କ୍ଷେତ୍ରରେ ଆପଣ କେବେ ବି କୌଣସି ପ୍ରକାର କାର୍ଯ୍ୟାନୁଷ୍ଠାନ କରି ନାହାନ୍ତି । ପେଟ ବିକଳରେ ଚାକିରି ପାଇଥିବା ଜ୍ଞାନୀ ଲୋକଙ୍କୁ ସଜାଡିବା ଆଦୌ କଷ୍ଟକର ନୁହେଁ; ଯଥା ସମୟରେ ଥରେ କାନମୋଡି ଦେଲେ ହୋଇଯିବ । ଯଦି ନ ସୁଧୁରିଲା, ଜଣେ ଦି'ଜଣ କୁଳାଙ୍ଗାରଙ୍କ ମୁଣ୍ଡ ମୋଡି ଦେଲେ ଦୁଇ ହଜାର ଚାରି ହଜାର ଅଧ୍ୟାପକ ବୁଝିଯିବେ- ମୁଣ୍ଡ ଉପରେ ଖଣ୍ଡା ଝୁଲୁଛି । ଆପଣ କେବେ ବି କୌଣସି କଥା କରିଛନ୍ତି ବୋଲି ମୁଁ ଜାଣି ନାହିଁ । କ୍ଷମା କରିବେ, ସାର୍, ଏଥିରେ କଣ କର୍ତ୍ତବ୍ୟ ଠିକ୍ ପାଳିତ ହେଲା ? ଅଧ୍ୟାପକଙ୍କର

ନାନା ପ୍ରକାର ସ୍ଖଳନ ଓ ତ୍ରୁଟି ବିଷୟରେ ଆପଣଙ୍କ ଫାଇଲ୍‌ରେ କଣ ପ୍ରମାଣର ଅଭାବ ? ବିନୀତ ଅନୁରୋଧ, ସାର୍, ପ୍ରମାଣ ବଳିଷ୍ଠ ଥିବା ଗୋଟାଏ କୁଳାଙ୍ଗାରକୁ ସାବାଡ କରି ଆମର ଏ ଛାତିଟାକୁ ରକ୍ଷା କରନ୍ତୁ ।''

ଡି.ପି.ଆଇ ଶୁଣୁଥିଲେ ଧୈର୍ଯ୍ୟ ସହ । କି ଉତ୍ତର ଥିଲା ତାଙ୍କ ପାଖରେ ? ଶେଷରେ ନିଃଶ୍ୱାସଟାଏ ଛାଡି ମାନିଲେ- ''ଆପଣଙ୍କ କଥାରେ ସତ୍ୟର ଭିତ୍ତି ଅଛି । ହଉ, ଦେଖନ୍ତୁ ତ କ'ଣ ହଉଚି ।'' ଉତ୍ତର ଦେଇଥିଲି, ''ମୁଁ ଯଥେଷ୍ଟ ଆଶା କରି ଅପେକ୍ଷା କରିବି ସାର୍ ।''

ମୁଁ ମାନୁଚି- ଏହା ବନ୍ଧୁତା ନୁହେଁ । ଏକ ଭିନ୍ନ ଧରଣର ସାଂସ୍କୃତିକ ଆତ୍ମୀୟତା । ମୁଁ ତାଙ୍କଠାରୁ ଚାରି ପାହାଚ ତଳର କର୍ମଚାରୀ; କିନ୍ତୁ କାହିଁକି କେଜାଣି ସେ ମୋତେ ବରଦାସ୍ତ କରୁଥିଲେ । କେବଳ ବୟସ ଅଥବା ମୋର ବିଦ୍ୟାବୁଦ୍ଧି ଯୋଗୁଁ ତାଙ୍କୁ କିଛି ସମ୍ମାନ ଦେବା ଏକ କାରଣ ହୋଇପାରେ; କିନ୍ତୁ ତାହା ଏକ ଦୁର୍ବଳ କାରଣ । ଅସଲ କଥା, ତାଙ୍କ ପରିଚ୍ଛନ୍ନ ବ୍ୟକ୍ତିତ୍ୱ ଏବଂ ସବୁ ସ୍ତରର ସବୁ ଅନୁଭବରୁ ନିଜେ କିଛି ଜାଣିବା ଶିଖିବାର ଅଭିଳାଷଜନିତ ବିମଳ ସୌଜନ୍ୟ । ସେତିକି ମୋ ସ୍ମୃତିର ସମ୍ପଦ । ସମ୍ବଲପୁରକୁ ଭୁବନେଶ୍ୱର ଅନେକ ବାଟ । ଆମର କେବେ କେବେ ବିରଳ ସାକ୍ଷାତ୍ ଘଟିଗଲେ ତାଙ୍କ ମୁହଁର ସେହି ସ୍ୱଚ୍ଛହସ ମୋତେ ଅଭ୍ୟର୍ଥନା କରୁଥିଲା । ଆମର ପ୍ରଶ୍ନୋତ୍ତର ସାଧାରଣତଃ ସଂକ୍ଷିପ୍ତ ଥିଲା- ଭଲ ଅଛନ୍ତି ? କଣ ଚାଲିଛି ଏବେ ? ଜାତୀୟ । ତିନିବର୍ଷ ପାଞ୍ଚବର୍ଷରେ ସେହି ସୌଜନ୍ୟର- ସେହି ସ୍ୱର୍ଣ୍ଣର ସ୍ମୃତି ନେଇ ଆହୁରି ପାଞ୍ଚବର୍ଷ ଅପେକ୍ଷା କରିହେଉଥିଲା । ଶେଷଥର ଭେଟିଥିଲି ବାଣୀବିହାର ପରିସରରେ ଯେଉଁଦିନ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଅନୁଷ୍ଠାନ କରିଥିଲେ ରଜତ ଜୟନ୍ତୀ ଉତ୍ସବ ।

ଆଉ ଦେଖା ହେବ ନାହିଁ । ବିଧୁବାବୁ ଚାଲିଗଲେ ।

ଗୋପାଳମାଳ
ସମ୍ବଲପୁର-୪

# ସମ୍ମୋହିତ କରୁଥିବା ସେ ଆଖି ଦୁଇଟି

ଗୋକୁଳାନନ୍ଦ ଦାସ

'ସଙ୍ଗୀତ କେମିତି ଚାଲିଛି !'

'ଗଣିତ କେମିତି ଚାଲିଛି !'

'Keep it up.'

ଏହି ତିନିପଦ କଥା ମୋତେ ଆଉ ଶୁଣିବାକୁ ମିଳିବ ନାହିଁ । ସେ ପାଟି ଚୁପ୍ ହୋଇଯାଇଛି । ସମସ୍ତଙ୍କୁ ସମ୍ମୋହିତ କରୁଥିବା ସେ ଆଖି ଦୁଇଟି ସବୁଦିନ ପାଇଁ ବୁଜିହୋଇ ଯାଇଛି । ଏକ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରଜ୍ଞାବାନ୍ ପୁରୁଷ ମୋର ପରମପୂଜ୍ୟ ଗୁରୁଦେବ ପ୍ରଫେସର୍ ବିଧୁଭୂଷଣ ଦାସ ଆଉ ଇହ ଜଗତରେ ନାହାନ୍ତି । ତାଙ୍କ ବିୟୋଗରେ ଏକ ଯୁଗର ଅବସାନ ଘଟିଲା ।

ବହୁଦିନ ତଳର କଥା । ୧୯୫୪ ମସିହା ଡିସେମ୍ବର ମାସ । ମୁଁ ରେଭେନ୍‌ସା କଲେଜ୍‌ର ପ୍ରଥମ ବର୍ଷର ଛାତ୍ର ଓ ପୂର୍ବ ଛାତ୍ରାବାସରେ ରହୁଥିଲି । ପ୍ରଫେସର ଦାସ୍ ସେତେବେଳେ ହଷ୍ଟେଲର ତତ୍ତ୍ୱାବଧାରକ । ହଷ୍ଟେଲ୍‌ର ନାଟ୍ୟ ସମ୍ପାଦକଙ୍କ ଠାରୁ ଡୁବି ତବଲା ଆଣି ମୁଁ ପାଖରେ ରଖିଥାଏ ଓ କ୍ଲାସରୁ ଫେରି କେତେବେଳେ କେମିତି ଅବସର ସମୟରେ ତବଲା ବଜାଏ । କେବଳ ମୋର ନୁହେଁ, ଅନ୍ୟ ଛାତ୍ରମାନଙ୍କର ଅବସର ସମୟକୁ ମଧ୍ୟ ଆଖିଆଗରେ ରଖି ମୁଁ ତବଲା ବଜାଏ ।

ହଷ୍ଟେଲରେ ସନ୍ଧ୍ୟା ଘଣ୍ଟା ବାଜିଲେ ସମସ୍ତେ ପଢ଼ା ଟେବୁଲ୍ ପାଖରେ ବସନ୍ତି । କୋଳାହଳମୟ ହଷ୍ଟେଲଟି ହଠାତ୍ ଚୁପ୍‌ଚାପ୍ ହୋଇଯାଏ । ବେଳେବେଳେ ସେ ନିସ୍ତବ୍ଧତାକୁ ଭଙ୍ଗ କରେ ଧୋବିର ପାଦଶବ୍ଦ । 'ଧୋବି' ହଷ୍ଟେଲର ପିଅନ । ତାକୁ ମଧ୍ୟ ସମସ୍ତଙ୍କର ଭୟ ଥାଏ । ଦିନେ ସନ୍ଧ୍ୟାରେ ସେ ଆମ ରୁମ୍‌କୁ ଆସିଲା । ମୁଁ କୋଡିଏ(୨୦)ନମ୍ବର କୋଠରୀରେ ଥାଏ । ମୋ ନାଁ ପଚାରି ସେ ମୋତେ ଏକ ସନ୍ଦେଶ ଦେଲା ।

'ସାର୍ ଡାକିଛନ୍ତି । କାଲି ସକାଳ ଆଠଟାରେ ଅଫିସ୍‌ରେ ଦେଖା କରିବ ।'' ମୋର ଦେହରୁ ଝାଳ ବହିଗଲା ଗମ୍ ଗମ୍ ହୋଇ । ଆମ କୋଠରୀର ଅନ୍ୟ ଚାରିଜଣଙ୍କ ମୁହଁରେ ପ୍ରଶ୍ନବାଚୀ । ଧୋବି ପୁଣି କହିଲା- 'ତମେ ତବଲା ବଜାଇ ଅନ୍ୟମାନଙ୍କର ପାଠପଢ଼ାରେ ବ୍ୟାଘାତ ସୃଷ୍ଟି କରୁଛ ବୋଲି ଦରଖାସ୍ତ ଯାଇଛି' - ମୁଁ ହତବାକ୍ ହେଲି । ଆଶ୍ଚର୍ଯ୍ୟ ହେଲି ମଧ୍ୟ । ଚାହୁଁ ଚାହୁଁ ବିଦ୍ୟୁତ୍ ବେଗରେ ହଷ୍ଟେଲ ସାରା ଖବର ବ୍ୟାପିଗଲା । ଚହଳ ପଡିଲା- ପରଓ୍ୱାନା ଆସିଛି, ମୁଣ୍ଡକାଟ ହେବ ।

ପ୍ରଫେସର୍ ଦାସଙ୍କର ଗମ୍ଭୀର ବ୍ୟକ୍ତିତ୍ୱ, ବିସ୍ଫାରିତ ଓ ତୀକ୍ଷ୍ଣ ଦୃଷ୍ଟି ସମସ୍ତଙ୍କୁ ଅଭିଭୂତ ଓ ନତମସ୍ତକ କରାଇଦିଏ । ସେ ଜଣେ ଦକ୍ଷ ପ୍ରଶାସକ ଓ କଡ଼ା ମିଜାଜ୍‌ର ବ୍ୟକ୍ତି ବୋଲି ଛାତ୍ରମହଲରେ ବହୁଳ ପ୍ରଚାରିତ । ତାଙ୍କର ଦୃଷ୍ଟିର ପ୍ରକୋପରୁ ମୁଁ କାଲି ବର୍ତ୍ତି ପାରିବି ତ ? ମୋ ସାଥିମାନଙ୍କର ମହା ଭାଳେଣି । ମୁଁ କିନ୍ତୁ ନିରବ ଥିଲେ ବି ମନ ଭିତରେ ଡରିମରି ଥରହର । ରାତିସାରା ନିଦ ନାହିଁ । ଅନେକ ଆଶା ଓ ଆଶଙ୍କାରେ ରାତି ପାହିଲା ।

ଠିକ୍ ସମୟରେ ଧୋବି ମୋତେ କାଠଗଡ଼ାକୁ ନେଲା ଓ ସାର୍‌ଙ୍କ ସାମ୍ନାରେ ହାଜର୍ କରାଇଲା । ସାର୍‌ଙ୍କୁ ଏତେ ପାଖରେ ପ୍ରଥମ ଥର ପାଇଁ ଦେଖିଲି ଓ ପ୍ରଣିପାତ ଜଣାଇ ଅନ୍ତର୍ଭେଦୀ ଆଖି ଦୁଇଟିକୁ ନିମିଷକ ପାଇଁ ଚାହିଁଛି କି ନାହିଁ ମୁହଁ ତଳକୁ କଲି । ସାର୍‌ଙ୍କର ବଜ୍ର ଗମ୍ଭୀର ସ୍ୱର- 'ତମେ ତବଲା ବଜାଅ' ?- ହଁ ଭରିଲି- ଏଇଠି ତବଲା ଅଛି, ବଜାଇଲ ଦେଖିବା- ଧୋବି ତବଲା ଆଣି ରଖିଲା । ମୁଁ ବଜାଇଲି । ପୁଣି ଗମ୍ଭୀର ସ୍ୱର- 'ଭଲ ବଜାଉଛ ତ ! କେଉଁଠୁ ଶିଖିଛ ?'- କହିଲି - ନିଜେ ନିଜେ । ସାର୍ କହିଲେ- 'ମୋ' ଝିଅ ନାଚ ଶିଖୁଛି । ତମେ ବେଳେବେଳେ ଆସି ତବଲା ବଜାଅ । ନିଃଶବ୍ଦରେ ସମ୍ମତି ଜଣାଇଁ ମୁଣ୍ଡ ଟୁଙ୍ଗାରିଲି ।'

ଏକ ନିଶ୍ୱାସରେ ଦୌଡ଼ି ଦୌଡ଼ି ପଳାଇ ଆସି ଏକ ଆଶ୍ୱସ୍ତିର ନିଶ୍ୱାସ ମାରିଲି ।

ରେଭେନ୍ସା କଲେଜ୍‌ରେ ବହୁ ଚର୍ଚ୍ଚିତ ଖ୍ୟାତନାମା, ପ୍ରତିଭାବାନ, ମହାନ ବ୍ୟକ୍ତିଙ୍କ ସହିତ ମୋ'ପରି ଏକ ନଗଣ୍ୟ ଛାତ୍ରର ଏପ୍ରକାର ଏକ ନାଟକୀୟ ସମ୍ପର୍କ ମୋତେ ଆଶ୍ଚର୍ଯ୍ୟ କରିଥିଲା । ତାଙ୍କର ବ୍ୟକ୍ତିତ୍ୱ ଭିତରେ ଲୁକ୍କାୟିତ ଏକ ସହନଶୀଳ କୋମଳ ଓ କଳାତ୍ମକ ଆଭିମୁଖ୍ୟ ପ୍ରତି ମୁଁ ଆଜୀବନ ଆକୃଷ୍ଟ ହୋଇଗଲି ଗଭୀର କୃତଜ୍ଞତା ସହ । ପରେ ଏହି ଅନୁଭବ ଏକ ଘନିଷ୍ଠ ଅନ୍ତରଙ୍ଗ ଓ ଆଶୀର୍ବାଦାତ୍ମକ ସମ୍ପର୍କରେ ରୂପାୟିତ ହେଲା ।

ଆଉ କେତୋଟି ଗଲା କଥା ମନେ ପଡ଼ିଯାଉଛି । ହଷ୍ଟେଲ୍‌ର ସଙ୍ଗୀତ ପ୍ରତିଯୋଗିତାରେ ତବଲା ବଜାଇ ପ୍ରଥମ ହୋଇଥିଲି ବୋଲି ସେ ବଧାଇ ଜଣାଇଥିଲେ । ହଷ୍ଟେଲର ବାର୍ଷିକ ଉତ୍ସବରେ ଆମର ଏକ ସହପାଠିନୀ ନାଚ ପରିବେଷଣ କରିବା ସମୟରେ ସାର୍‌ଙ୍କର ନିର୍ଦ୍ଦେଶରେ ମୁଁ ଥିଲି ତବଲା ବାଦକ ।

ସାର୍‌ଙ୍କ କ୍ଲାସରେ ବସିବାର ସୁଯୋଗ ମୋତେ ଅଳ୍ପ କେତେଥର ମିଳିଛି । ମୁଁ ସବୁକଥା ବୁଝିପାରେ ନାହିଁ । କିନ୍ତୁ ବିହ୍ୱଳ ହୋଇ ତାଙ୍କ ମୁହଁକୁ ଚାହିଁଥାଏ । ଲକ୍ଷ୍ୟକରୁଥାଏ, କିପରି ବୁଲେଟ୍ ପରି ଇଂରାଜୀରେ ଶବ୍ଦଗୁଡ଼ା ଅନର୍ଗଳ ବାହାରୁଛି । ବାହାରୁଛି ଝରଝର୍ ଝରୁଥିବା ଦ୍ରୁତଗାମୀ ଝରଣାର ସଙ୍ଗୀତ ସୃଷ୍ଟିକରି । ସୃଜନଶୀଳ ଛାତ୍ରଙ୍କ ପ୍ରତି ସୁରକ୍ଷାତ୍ମକ ମନୋଭାବ ପୋଷଣ କରିବା, ସାହିତ୍ୟକୁ ବ୍ୟାପକ

ଦୃଷ୍ଟିକୋଣରୁ ବିଚାର କରି ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରିବା ତାଙ୍କୁ ଏକ ଉଚ୍ଚକୋଟୀର ଶିକ୍ଷକ ହିସାବରେ ପ୍ରତିପାଦିତ କରିଥିଲା ।

ମୁଁ ଗଣିତ ପଢ଼ିଲି । ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ ଯେତେବେଳେ ତାଙ୍କ ସହିତ ସାକ୍ଷାତ ହେବାର ସୁଯୋଗ ମିଳିଛି ସବୁବେଳେ ତିନିପଦ କଥା- 'ସଙ୍ଗୀତ କେମିତି ଚାଲିଛି ?'

'ଗଣିତ କେମିତି ଚାଲିଛି ?'

'Keep it up !'

ସାଙ୍କର ସବୁବେଳେ ଉପଦେଶ ଯେ ଓଡ଼ିଶାର ମେଧାବୀ ଛାତ୍ର, ଛାତ୍ରୀମାନେ ଉଚ୍ଚତର ଗବେଷଣା କରନ୍ତୁ । ବିଦେଶକୁ ଯାଆନ୍ତୁ, କିନ୍ତୁ ଓଡ଼ିଶା ଭୂମିକୁ ଫେରି ଏଇମାଟିରେ ନୂଆନୂଆ ଗବେଷଣାର ଦିଗ୍‌ଦର୍ଶନ ଦିଅନ୍ତୁ । ଏହି କଥାକୁ ଯୋର୍‌ଦେଇ ସେ ମୋତେ ଓ଼ ଅନ୍ୟମାନଙ୍କୁ ବାରମ୍ବାର କହିଛନ୍ତି ।

ସାର୍‌ଙ୍କ ସାଙ୍ଗରେ ଆଉ ଏକ ଅନ୍ତରଙ୍ଗ ମୁହୂର୍ତ୍ତ କଥା ନଲେଖି ରହିପାରୁନାହିଁ । ଏକ ସରକାରୀ କମିଟିରେ ପ୍ରଫେସର ଦାସ ପୂଜ୍ୟ ଗୁରୁଦେବ ପ୍ରଫେସର ବ୍ରଜବନ୍ଧୁ ମିଶ୍ର ଓ ମୁଁ କଲିକତା ଯାଇଥିଲୁ । ମୁଁ ସେତେବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଥିଲି । ଉଦ୍ଦେଶ୍ୟ ଥିଲା, ଓଡ଼ିଶାରେ ମାଧମିକ ସ୍ତରର ଗଣିତ ପାଠ୍ୟକ୍ରମରେ ବ୍ୟାପକ ପରିବର୍ତ୍ତନ କରିବା ପରିପ୍ରେକ୍ଷୀରେ ପଶ୍ଚିମବଙ୍ଗ ପଦ୍ଧତି ଅନୁଶୀଳନ କରିବା । (ସେତେବେଳେ 'ଓଡ଼ିଶା ଗଣିତ ସଂସଦ' ଗଣିତ ପାଠ୍ୟକ୍ରମର ଆଶୁ ପରିବର୍ତ୍ତନ ପାଇଁ ଶିକ୍ଷା ନିର୍ଦ୍ଦେଶକଙ୍କୁ ବାରମ୍ବାର ଅନୁରୋଧ କରୁଥିଲା ଏବଂ ପ୍ରଫେସର ଦାସ ମଧ ଓଡ଼ିଶା ଗଣିତ ସଂସଦ'ର ଏହିଭୂମିକା ପାଇଁ ବହୁ ପ୍ରଶଂସା କରୁଥିଲେ ।) ଆମେ ରହିଲୁ ଭବନରେ । ଆମେ ସେଠାରେ ଯେତେ ମିଟିଂରେ ଯୋଗଦେଲୁ, ସାର୍ ସମସ୍ତଙ୍କ ସହ ମୋତେ ବହୁଳ ଭାବରେ ପରିଚୟ କରାଇ ଆଲୋଚନାରେ ପ୍ରମୁଖ ଭୂମିକା ନେବାକୁ ପ୍ରବର୍ତ୍ତାଇଥିଲେ । ଦିନେ ସନ୍ଧ୍ୟାବେଳେ କିଛି କାର୍ଯ୍ୟକ୍ରମ ନଥାଏ । ସମୟ କିମିତି କଟିବ, ଦୁଇସାର୍‌ଙ୍କ ମଧରେ କଥାବାର୍ତ୍ତା ଚାଲିଥାଏ । ପ୍ରଫେସର୍ ଦାସ କହିଲେ- 'ଗୋକୁଳାନନ୍ଦ କହୁ । ମୁଁ ହଠାତ୍ କହି ପକାଇଲି- 'ସିନେମା ଯିବା- ।' ସମସ୍ତେ ସିନେମା ଗଲୁ ଚାଲିଚାଲି । ପାଖରେ ସିନେମା ଘର । ଇଂରାଜୀ ଛବି ପଡିଥାଏ- Burning Inferno । ଦୁଇ ଗୁରୁଙ୍କର ଛାତ୍ର ହିସାବରେ ମୁଁ ଲାଇନରେ ରହି ଟିକେଟ୍ ଆଣିବା କଥା । ମୁଁ ଲାଇନ୍‌ରେ ଛିଡା ହେଲାବେଳକୁ ପ୍ରଫେସର ଦାସ କହିଲେ- 'ତମେ ଆସ, ମୁଁ ଆଣୁଛି ।' ସେଦିନ ସନ୍ଧ୍ୟାଟି ମୋର ପୂଜ୍ୟ ଦୁଇ ଗୁରୁଦେବଙ୍କ ଗହଣରେ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା । ସେ ସନ୍ଧ୍ୟା ମୋ ପାଇଁ ଚିର ସ୍ମରଣୀୟ ।

ଅକ୍ଟୋବର ୯, ୧୯୯୮, ସକାଳ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କଲି । ପ୍ରଫେସର ଦାସଙ୍କ ଆଶୀର୍ବାଦ । ତାଙ୍କ ବାସ ଭବନକୁ ଯାଇଥିଲି । ସେତେବେଳେ ସେ ମଠା ପିନ୍ଧି ଦେବୀଙ୍କର ଆରାଧନା କରୁଥିଲେ । ସେଇଠିକି ଡାକିଲେ ମୋତେ । ମୁଁ ନତମସ୍ତକ ହୋଇ ପ୍ରଣିପାତ କରିବା ସମୟରେ ସେ ତାଙ୍କର ହାତ ମୋ ମୁଣ୍ଡ ଉପରେ ଥୋଇ ଆଶୀର୍ବାଦ ଦେଇଥିଲେ । ସେତେବେଳେ ବେଶୀ କଥା ହେବାର ସୁଯୋଗ ନଥିଲା । କିନ୍ତୁ ଅଳ୍ପଦିନ ପରେ ତାଙ୍କ ସହିତ ଦୀର୍ଘ ଆଲୋଚନା ହୋଇଥିଲା ଓ ସେ ମୋତେ ନିର୍ଭୀକ ଭାବରେ ନିୟମ ଅନୁସାରେ କାର୍ଯ୍ୟକରିବାକୁ ଓ ଶିକ୍ଷାର ମାନ ଉନ୍ନତ କରିବାକୁ ପରାମର୍ଶ ଦେଇଥିଲେ । କିନ୍ତୁ ହାୟ ! ବିଧିର ବିଧାନ ଭିନ୍ନ । ସବୁ ପ୍ରେରଣାର ଉତ୍ସ ଶୁଖିଗଲା ।

ଜୁନ୍ ୨, ୧୯୯୯ ସକାଳ ନଟା ବଡ ନିଷ୍ଠୁର ହେଲା । ଖବର ପାଇ ମୁଁ, କୁଳ ସଚିବ ଶ୍ରୀ ନିକୁଞ୍ଜ କିଶୋର ଦାସ, ପ୍ରଫେସର କୃତ୍ତିବାସ ପଟ୍ଟନାୟକ (ପଦାର୍ଥ ବିଜ୍ଞାନ), ଭିକାରୀ ଚରଣ ଗୁରୁ ( ପରୀକ୍ଷା ନିୟନ୍ତ୍ରକ) କଳିଙ୍ଗ ହସ୍‌ପିଟାଲରେ ପହଞ୍ଚିଲୁ । ସାର୍‌ଙ୍କର ନିର୍ଜୀବ ଶରୀରର ପାଦତଳେ ଫୁଲରଖି ପୂଜ୍ୟ ଗୁରୁଙ୍କୁ ଶେଷ ପ୍ରଣତି ଜଣାଇଲୁ । ସେଇ ପ୍ରଶାନ୍ତ ମୁଖମଣ୍ଡଳ କିନ୍ତୁ ସମ୍ମୋହିତ କରୁଥିବା ସେଇ ଆଖି ଦୁଇଟି ମୁଦ୍ରିତ । ସତେ ଯେପରି ଶାନ୍ତିରେ ସାର୍ ଗଭୀର ନିଦରେ ଶୋଇ ଯାଇଛନ୍ତି ।

ପ୍ରଫେସର ଦାସଙ୍କର ସହଧର୍ମିଣୀ ପରମପୂଜ୍ୟା ପ୍ରଫେସର ପ୍ରଭାତ ନଳିନୀ ଦାସ୍ ମ୍ରିୟମାଣ ହୋଇ ନିଶ୍ଚଳ ଭାବରେ ବହି ରହିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ମାଟି ଉପରେ ଗୁରୁଦେବଙ୍କ ମର ଶରୀରକୁ ନେବା ପାଇଁ ମ୍ୟାଡାମ୍‌ଙ୍କୁ ଅନୁରୋଧ କଲୁ ।

ସେହିଦିନ ସାର୍‌ଙ୍କ ପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ସ୍ମୃତିସଭା ଓ ତା' ପରଦିନ ତାଙ୍କର ମରଶରୀର ବାଣୀବିହାର ପରିସର ଦେଇ ଯିବା ବେଳେ ବିଶ୍ୱବିଦ୍ୟାଳୟର ଅଗଣିତ ଶିକ୍ଷକ, ଛାତ୍ର ଓ କର୍ମଚାରୀମାନେ ଅଶ୍ରୁଳ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ।

ଉଦାସିଆ ଆକାଶରେ କ୍ଲାନ୍ତ ସନ୍ଧ୍ୟା ନଇଁ ଆସୁଥିଲା ।

କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ



# ଜଣେ ସ୍ନେହୀ ଶିକ୍ଷା ଗୁରୁଙ୍କ ସ୍ମୃତିରେ

*ସୀତାକାନ୍ତ ମହାପାତ୍ର*

୧୯୫୪ ମସିହା ଶେଷ ଆଡକୁ ମୁଁ ଦ୍ୱିତୀୟ ବର୍ଷିକ ବିଜ୍ଞାନ (ସେତେବେଳର ଆଇ.ଏସ୍‌ସି ୨ୟ ବର୍ଷ) ଛାତ୍ର ରେଭେନ୍‌ସା କଲେଜରେ, ରହୁଥାଏ ପୂର୍ବ ଛାତ୍ରବାସରେ । ସେ ଦିନର କ୍ଲାସଟିଏ ଗୋଟିଏ ବଡ ରୁମ୍‌ରେ । ଇଂରେଜୀ ପାଠ୍ୟକ୍ରମର୍ । ଆମେ ପ୍ରାୟ ୧୨୦ ପିଲା । ଆନନ୍ଦରେ ଅଧ୍ୟାପକଙ୍କ ବକ୍ତୃତା ଶୁଣୁଥାଉ । ହଠାତ୍ ଶୁଭିଲା ତାଙ୍କ ଉଚ୍ଚକିତ ସ୍ୱର, ଇଂରେଜୀରେ "Don't Come to my class, chewing like a donkey" ଅର୍ଥାତ୍ ଗଧ ପରି ପାକୁଳି କରି ମୋ ଶ୍ରେଣୀକୁ ଆସିବନି । ଆମେ ସମସ୍ତେ ଅନେଇଲୁ ଯେଉଁ ଦିଗକୁ ଏ ବ୍ରହ୍ମାସ୍ତ୍ର ଖେପି ଯାଉଥାଏ । କାକୁସ୍ଥ ବନ୍ଧୁଜଣକ (ପୁଣି ସେ ମୋ ପୂର୍ବ ଛାତ୍ରାବାସ ରୁମ୍-ମେଟ୍ ଯିଏ ବହୁତ ପାନ ଚୋବାନ୍ତି) ଶ୍ରେଣୀରୁ ଶିକ୍ଷକଙ୍କ ନିର୍ଦ୍ଦେଶାନୁସାରେ ଅବିଳମ୍ବେ ନିଷ୍କ୍ରାନ୍ତ ହୋଇଗଲେ ।

ଶିକ୍ଷକ ଜଣକ ଥିଲେ ଅଧ୍ୟାପକ ବିଧୁଭୂଷଣ ଦାସ । ଶ୍ରେଣୀରେ ତାଙ୍କ ବକ୍ତୃତା ଶୁଣିବାରେ ସଭିଙ୍କର ଆନନ୍ଦ ପ୍ରବଳ ଉତ୍ସାହ । ଖୁବ୍ ଭଲ ଲାଗେ । ଆମେ ନୋଟ୍ କରୁ । ଗୋଲ ଗୋଲ ଚଷମା ତଳୁ ଦୁଇଟି ଯୋଡିଏ ଉଜ୍ଜ୍ୱଳ ଆଖି, ଜ୍ୱଳନ୍ତ ଗୋଲକ ପରି । ଡର ବି ମାଡେ ତାଙ୍କୁ । କଲେଜ ପରିସର ଭିତରେ ଭେଟିଲେ, ଛାତ୍ରବାସ ବାରଣ୍ଡାରେ ଭେଟିଲେ (ସେ ଆମ ଛାତ୍ରବାସର ସୁପରିନ୍‌ଟେନ୍‌ଡେଣ୍ଟ ଥିଲେ, ଅଧ୍ୟାପକ ଶଙ୍କର୍ଷଣ ମହାପାତ୍ର ଥିଲେ ଆସିଷ୍ଟାଣ୍ଟ୍ ସୁପରିନ୍‌ଟେନ୍‌ଟେଣ୍ଟ) ଆମେ ବାଟ ଭାଙ୍ଗି ଚାଲିଯାଉ । ସମୟ ସେମିତି ଥିଲା । ଶିକ୍ଷକଙ୍କୁ ଆମେ ଗୁରୁ ମଣୁଥିଲୁ । ବିଶେଷ କରି ତାଙ୍କ ପରି ବିଜ୍ଞ, ପ୍ରାଜ୍ଞ, ବିଶାଳ-ଜ୍ଞାନର ଆଧାର ଶିକ୍ଷକଙ୍କୁ ସ୍ୱତଃ ସମ୍ମାନ ଓ ସ୍ନେହ କରୁଥିଲୁ କିନ୍ତୁ ତା' ସହିତ ବି ଡରୁଥିଲୁ । ବାଟ ଭାଙ୍ଗି ଚାଲିଯାଉଥିଲୁ । ଶିକ୍ଷକମାନେ ବି ଆମକୁ ଛାତ୍ର, ଅନ୍ତେବାସୀ ବୋଲି ବିଚାରୁଥିଲେ । ଶୁଣିଛି, ଏବେ ଠିକ୍ ବିପରୀତ ଅବସ୍ଥା । ଦଳେ ଛାତ୍ର ଏକାଠି ଛିଡା ହୋଇ ଗପ କରୁଥିଲେ ଶିକ୍ଷକମାନେ ବାଟ ଭାଙ୍ଗି ମଥା ନୁଆଇଁ ଚାଲିଯାଉଛନ୍ତି ।

ଏଇ ପରିପ୍ରେକ୍ଷୀରେ ଦିନେ ତାଙ୍କଠୁଁ ଡାକରା ପାଇ ମୁଁ ପ୍ରମାଦ ଗଣିଲି । କେଉଁଠି କଣ ଭୁଲ୍ ଭଟକା ହେଲାକି ? ସେ ଭୟ ଅହେତୁକ ହେଲା । ସାକ୍ଷାତରେ ସେ କହିଲେ "ରେଭେନ୍‌ସିଆନ୍" ରେ ପ୍ରକାଶିତ ତୁମ ଇଂରାଜୀ କବିତା A Dichotomy

...ତ ଖୁବ୍ ଚମତ୍କୃତ କରିଛି । ଜଣେ ବିଜ୍ଞାନଛାତ୍ର, ପୁଣି ଦ୍ୱିତୀୟ ବର୍ଷର, ତା'ଠୁଁ ତ ଏହା ଆଶା କରାଯାଏନି । ମୋତେ ଅଧ୍ୟାପକ ଓବ୍ରାଏନ୍ ମଧ୍ୟ ତୁମ କ୍ଲାସ ପରୀକ୍ଷା ଖାତା ସବୁ ଛାତ୍ରଙ୍କୁ ଦେଖିବାକୁ ଦେଇଛନ୍ତି ବୋଲି କହୁଥିଲେ ।''

ଉତ୍ସାହିତ ହେଲି । କିଛି ପାଠ କଥା ପଚାରିଥିଲେ । ପଢ଼ିଥିବା ବହି, ଭଲ ଲାଗିଥିବା ବହି କଥା । ସଦ୍ୟ ସଦ୍ୟ କାମ୍ୟୁଙ୍କ The Plague ଉପନ୍ୟାସ ପଢ଼ିସାରିଥିବା କଥା କହିଲି । ଯା ପଢ଼, ତା' ପଢ଼, କେତେ କଣ ସେ ଉପଦେଶ ଦେଲେ । ତାଙ୍କ ଉପସ୍ଥିତିରୁ ଫେରି ଆସିଲା ବେଳକୁ ମୋ ଉଚ୍ଚତା ବଢ଼ିଲାପରି ଲାଗୁଥିଲା । ଶୁଣିଛି, ସବୁ ପ୍ରକୃତ ଜ୍ଞାନୀଙ୍କ ସାମ୍ନାରେ ସେଇଆ ଘଟେ ।

ଆଇ ଏସ୍‌ସି ପାସ କଲି । ପ୍ରଥମ ହୋଇ ବିଶ୍ୱବିଦ୍ୟାଳୟରେ ଓ ରେକର୍ଡ଼ ମାର୍କ୍ ରଖି ଯାହା ତିନି ବର୍ଷିଆ ବିଜ୍ଞାନ ହେବା ଯାଏ ରେକର୍ଡ ହୋଇ ରହିଥିଲା । ଏ ପ୍ରନ୍ତତ୍ତ୍ୱ ବାଢ଼ିବାର କାରଣ କିଛି ନାହିଁ -ବସ୍ତୁତଃ ମୂଲ୍ୟହୀନ । କେବଳ ପ୍ରାସଙ୍ଗିକତା ଉପଲକ୍ଷେ । ଆଇ.ଆଇଟି ଖଡଗପୁର ଯିବା ୨ ଦିନ ଆଗରୁ (ଇଂଜିନିଅରିଂ ପଢ଼ିବାକୁ) ମୁଁ ବିଏ. (ଅନର୍ସ) ପଢ଼ିବା ସ୍ଥିର କରି ରେଭେନ୍‌ସାରେ ନାଁ ଲେଖାଇଲି । ଇଂରେଜୀ ଅନର୍ସ । ପୁଣି ତାଙ୍କଠୁଁ ଡାକରା । ଏଥର ମଧ୍ୟ ଉପଦେଶ । ''ଜାଣିଛି, ତୁମେ ଇଂରାଜୀ ସାହିତ୍ୟ ଭଲପାଅ । ଖୁବ୍ ଖୁସି ତୁମେ ବି.ଏ. ପଢ଼ିଲ । ଇଂଜିନିଅରିଂ ନୁହଁ । ମାତ୍ର ଦେଖ ମୋର ଯେତେ ଭଲ ଛାତ୍ର କେହି ଅନର୍ସରେ ପ୍ରଥମ ଶ୍ରେଣୀ ପାଉ ନାହାନ୍ତି ।'' ଗୌର କିଶୋରଙ୍କ ନାଁ ନେଲେ । କହିଲେ, ଇତିହାସ୍ ଅନର୍ସ ନେଇ ପଢ଼ । ଇଂରାଜୀ ସାହିତ୍ୟରେ ଆପଣା ମନ ଅନୁସାରେ ପଢ଼ିପାରିବ । ଏ ଉପଦେଶ ମୋର ଦୀର୍ଘକାଳ ମନେ ରହିଥିଲା, ଅଛି । ସେଇଆ ବି କରିଥିଲି ।

ଆମେ ଶୁଣୁ ଛାତ୍ରବତ୍ସଳ ଶିକ୍ଷକଙ୍କ କଥା । ସାଧାରଣ ଅର୍ଥରେ ସେ ଛାତ୍ରବତ୍ସଳ ନଥିଲେ । ଭାରି ଟାଣୁଆ ମଣିଷ, ଜିଦ୍‌ଖୋର, ନିଜ ଅଗାଧ ଜ୍ଞାନର ପରିସୀମା ସମ୍ପର୍କରେ ବେଶ୍ ସଚେତନ, ପିଲାଙ୍କୁ ଶାସନ, ଅନୁଶାସନର ମାର୍ଗ ଦର୍ଶନରେ ବିଶ୍ୱାସୀ । ସେଇଥିପାଇଁ ହୁଏତ ଛାତ୍ର ବା ସହକର୍ମୀମାନେ ତାଙ୍କୁ ଡରି ରହିଥିଲେ । ଆତ୍ମୀୟ ହୋଇ ପାରିଲେନି । କିନ୍ତୁ ମୋର ହୁଏତ ଭାଗ୍ୟ ଯେ ତାଙ୍କଠୁଁ ଶିକ୍ଷକସୁଲଭ ଜ୍ଞାନର ମାର୍ଗ ଯେତିକି ପାଇଛି, ସେତିକି ମଧ୍ୟ ଆନ୍ତରିକ ସ୍ନେହ, ଅନୁରାଗ ।

ଏବେ ତାଙ୍କ ଅନୁପସ୍ଥିତିରେ ସେଇ ଦ୍ୱିତୀୟ କଥାଟି ବେଶୀ ମନକୁ ଆସୁଛି । କହି ରଖେ, ମୋର ଛାତ୍ର ଜୀବନର ବିବିଧ ପର୍ଯ୍ୟାୟରେ ଜଣେ ଜଣେ ଗୁରୁଙ୍କ ସ୍ମୃତି ମନରେ ଚିରକାଳ ରହିବ । ପଞ୍ଚମ ଶ୍ରେଣୀଯାଏ ତ ଖୋଦ୍ ବାପା- ଯାହାଙ୍କ ତୁଣ୍ଡରେ ଅମରକୋଷ, ତପସ୍ୱିନୀ, ଭଞ୍ଜ, ରାଧାନାଥ, ମଧୁସୂଦନ ରାଓ । ଦ୍ୱିତୀୟ, କୋରୁଆ ହାଇସ୍କୁଲର ପ୍ରଧାନ ଶିକ୍ଷକ, ଢ଼େଙ୍କାନାଳର ଗତିକୃଷ୍ଣ ଭଞ୍ଜ । ରେଭେନ୍‌ସା କଲେଜରେ

ବିଧୁବାବୁ । ଆଉ ଏଲାହାବାଦରେ ଏମ୍.ଏ. ରାଜନୀତି ବିଜ୍ଞାନରେ ପ୍ରଫେସର ଅବାଧବିହାରୀ ଲାଲ (ଯିଏ ପରେ ଏଲାହାବାଦ ବିଶ୍ୱବିଦ୍ୟାଳୟର କୁଳପତି ଓ ଆହୁରି ଅନେକ କିଛି ହେଲେ) । ମୋ ପାଇଁ ସୁଖର କଥା, ଏମାନେ ମୋ ଭବିଷ୍ୟତ ଜୀବନର ବିଭିନ୍ନ ପର୍ଯ୍ୟାୟରେ ମୋ କଥା ମନେ ରଖିଥିଲେ । ବହୁତ ଚିଠି ସେମାନଙ୍କଠୁଁ ପାଇଥିଲି । ପ୍ରଫେସର ଲାଲଙ୍କ ମୃତ୍ୟୁ ଯାଏ ଚିଠି ଆସୁଥିଲା । ୯୪ର ଜ୍ଞାନପୀଠ ଯାଏ । ସେମିତି ବିଧୁବାବୁ ଓ ଶ୍ରୀ ଭଞ୍ଜଙ୍କ ଠାରୁ । ବିବାହ, ସାହିତ୍ୟିକ ଜୀବନର ବିବିଧ ପର୍ଯ୍ୟାୟର ସ୍ତରେ ସ୍ତରେ । ଦୁର୍ଭାଗ୍ୟ- ସବୁ ଚିଠି ରଖିପାରିନି । ବିଧୁବାବଙ୍କ ଚାଲିଯିବା ପରେ ୭ ପୃଷ୍ଠାରି ଦୀର୍ଘ ତାଙ୍କର ଚିଠିଟିଏ ଆଉ ଥରେ ପଢୁଥିଲି । ସେମିତି ଥିଲା ପ୍ରଫେସର ଲାଲଙ୍କ ଚିଠି ସବୁ । ତାଙ୍କୁ ରମାକାନ୍ତ ମିଶ୍ର, ନୀଳମାଧବ, ପ୍ୟାରୀମୋହନ ଇତ୍ୟାଦି ମଧ୍ୟ ଏବେ ବି ସୁମରୁଛନ୍ତି ।

ଚିଠିରେ ବିଧୁବାବୁ କ'ଣ ଲେଖିଥିଲେ ମୋତେ ? ନାନା କଥା ଓଡ଼ିଶା, ଆମର ସାଂସ୍କୃତିକ ବିପର୍ଯ୍ୟୟ, ସବୁଥିରେ ଓଡ଼ିଆପ୍ରତି ଅବହେଳା, ମେରୁଦଣ୍ଡ ହୀନ ଆମର ନେତୃତ୍ୱ, ଜାତୀୟ ସଂସ୍କୃତି, ଇତ୍ୟାଦି ଇତ୍ୟାଦି । ବେଳେ ବେଳେ ନିର୍ଦ୍ଦିଷ୍ଟ ବହିକଥା କିମ୍ବା ପ୍ରାସଙ୍ଗିକ କିଛି । ଓଡ଼ିଶାର ଦୁର୍ଭାଗ୍ୟ ଯେ ଏ ଦେଶରେ ଜଣେ ''ଶାଗଖିଆ'' ''ପେଜଖିଆ''କୁ ବି ଦେଖିପାରେନି, ଈର୍ଷା କରେ । ସେଇ କଥା ତ କାଟେ । ବିଗତ ୨୦ ବର୍ଷରେ ୟୁଜିସି ଚେୟାରମ୍ୟାନ୍ ବା ସଦସ୍ୟ ହୋଇଥିବା ତାଲିକାକୁ ଦୃଷ୍ଟି ପକାନ୍ତୁ । ବିଧୁଭୂଷଣ ସେଥିପାଇଁ ଥିଲେ ଅଯୋଗ୍ୟ !! ରାଜନୈତିକ ଦୃଷ୍ଟିକୋଣରୁ ଯେ ସବୁ ଘଟିଯାଏ, ଘଟିଛି । ଦୁଃଖଲାଗେ । ତାଙ୍କ ସହ, ଗୋପୀନାଥ ମହାନ୍ତି ଥିଲାବେଳେ ତାଙ୍କ ସହ ଏଇ କଥା ବେଳେ ବେଳେ ବି ପଡେ । ଆମେ ଆମକୁ ଚିହ୍ନିଲୁନି, ସହିଲୁନି । ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ, ଉତ୍ସାହ, ଉପରକୁ ଉଠାଇବା ପ୍ରଚେଷ୍ଟା ତ ଦୂର କଥା । କେବଳ ଗୋଡ଼ ଟାଣିବାରେ ହିଁ ଓଡ଼ିଆତ୍ୱ ସୀମିତ ହୋଇପଡୁଛି । ଦିନୁଦିନ, ଅଧିକରୁ ଅଧିକ । ଦେବୀପ୍ରସନ୍ନଙ୍କ ପରି କେଇଜଣ ଭାଷାବିତ୍ ଭାରତବର୍ଷରେ, ତେଜେଶ୍ୱର ରାଓଙ୍କ ପରି କୃତବିଦ୍ୟ ଅଧ୍ୟାପକ କେଇଜଣ (ମାତ୍ର ଗୋଟିଏ ଦିଓଟି ନାଁ ନେଉଛି) କିନ୍ତୁ ସେ କଣ ICMR କୁ କେବେ ଗଲେ ?

ସେ କଥା ପଛକୁ । ଆତ୍ମୀୟତା କଥା କହୁଥିଲି । ମୋ ପରିବାରରେ 'ସାର୍' ଓ 'ଭାବୀ' ଗୋଟିଏ ଉପସ୍ଥିତି ହୋଇ ସ୍ଥାନିତ ହୋଇ ରହିଲେ । ଦେହ ଖରାପ ରହିଲା । ବରମୁଣ୍ଡା ହସ୍‌ପିଟାଲ୍‌ରେ ଦେଖି ଆସିଥିଲି । କେତେ କ'ଣ ପଚାରିଲେ ଅସୁସ୍ଥତା ସତ୍ତ୍ୱେ, ରବି (ଦାସ) ଘରେ ଭେଟିଲି । (ଅସୁସ୍ଥତା ଭିତରେ ମୋ ଆଖି ପାଇଁ ହୋମିଓପାଥି ପ୍ରଥମେ ଲେଖିନେବାକୁ କହିଲେ) ଆଉ ଶେଷରେ କଳିଙ୍ଗ ହସ୍‌ପିଟାଲ୍‌ରେ । ସେ ଶେଷ ଦେଖା (ଯାହା ଥିଲା କବାଟର କାଚବାଟେ)- ଥିଲା

ଶବ୍ଦହୀନ । ସେ କିଛି କହୁ ନଥିଲେ, ଯନ୍ତ୍ରଣାରେ ବୁଡି ରହିଥିଲେ । ଏ ସଂସାରଠୁଁ, ସବୁଥିରୁ ନିର୍ମାୟା ହୋଇ ଧୀରେ ଧୀରେ ଅପସରି ଯାଉଥିଲେ । ଭାବୀ ବାହାରେ ଛିଡା ହୋଇ ବହିଟିଏ ପଢୁଥିଲେ । ମୁହଁରେ ଆଷାଢ଼ର ବଉଦ ନଇଁ ରହିଥାଏ । ଅପରାହ୍ନର ଛାଇ ସାର୍‌ଙ୍କ ଜୀବନ ଉପରେ ଲମ୍ବି ଆସୁଥିଲା । ସେ ଦୃଶ୍ୟ ସାରାଜୀବନ ଭୁଲିବନି ।

ତା' ପରେ ଶହୀଦ୍ ନଗର ଘରେ ଶେଷ ପ୍ରଣାମ କରି ଆସିଥିଲି ଏକଦା ଛାତ୍ରବତ୍ସଳ, ସ୍ନେହୀ ସେଇ ପ୍ରାଜ୍ଞ ପୁରୁଷଙ୍କୁ । ଓଡ଼ିଶା ଶିକ୍ଷା ସଂସ୍କୃତି କ୍ଷେତ୍ରରେ ଯୁଗଟିଏ ସରିଯାଏ । ମୋ ବାପାଙ୍କ ମୃତ୍ୟୁକୁ ନେଇ ଲିଖିତ କବିତା ''ଶତ୍ରୁ'' ତାଙ୍କୁ ଖୁବ୍ ଭଲ ଲାଗିଥିଲା । ଟେଲିଫୋନ୍‌ରେ ୧୦ ମିନିଟ୍ କହିଥିଲେ । ''ଶତ୍ରୁ'' ଏବେ ତାଙ୍କୁ ବଂଶୀ ବଜେଇ ନେଇ ଯାଇଥିଲା ଆଉ ଏକ ପୃଥିବୀକୁ ।

ସଭାପତି<br>ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ<br>ଦିଲ୍ଲୀ



# ସ୍ୱର୍ଗୀୟ ପ୍ରଫେସର ବିଧୁଭୂଷଣ ଦାସ

ପୂର୍ଣ୍ଣଚନ୍ଦ୍ର ହୋତା

ପ୍ରଫେସର ବିଧୁଭୂଷଣ ଦାସ ଆଉ ନାହାନ୍ତି । ରକ୍ତ ମାଂସର ମଣିଷ ଶାଶ୍ୱତ ନୁହେଁ । ଏହା କହି ମୁଁ ମନକୁ ବୁଝେଇ ଦେଲି । କିନ୍ତୁ ଓଡ଼ିଶାର ଅଗଣିତ ଛାତ୍ରଛାତ୍ରୀଙ୍କୁ ସେ ଯେଉଁ ଜ୍ଞାନ ଦେଇଗଲେ, ସେଥିପାଇଁ ତାଙ୍କୁ ଓଡ଼ିଶାବାସୀ କେବେ ଭୁଲି ପାରିବେ ନାହିଁ । ତାଙ୍କର ଅମର ସ୍ମୃତି ସମସ୍ତଙ୍କ ମାନସପଟରେ ଚିରଦିନ ଲିପିବଦ୍ଧ ହୋଇ ରହିବ ।

ପ୍ରଫେସର ବିଧୁଭୂଷଣ ଦାସ ପାଟଣା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ । ସେ କାଳରେ କୌଣସି ବିଷୟରେ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇବା ଅତି କଷ୍ଟକର ଥିଲା । କୌଣସି ଛାତ୍ର ବା ଛାତ୍ରୀ ଅତି ମେଧାବୀ ନହେଲେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ଅସମ୍ଭବ ଥିଲା । ବିଶେଷତଃ ଇଂରାଜୀ ଭାଷା ସାହିତ୍ୟରେ ପ୍ରଥମ ଶ୍ରେଣୀ ପାଇବା ଅତି ଦୁରୂହ ବ୍ୟାପାର ଥିଲା । କିନ୍ତୁ ନିଜର ଅପରିସୀମ ଜ୍ଞାନ ଓ ବିଦ୍‌ବତ୍ତା ଯୋଗୁଁ ପ୍ରଫେସର ଦାସ ପାଟଣା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ । ତା ପରେ ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏ.ଏମ୍. ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ ଏବଂ ବିଶ୍ୱବିଖ୍ୟାତ ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟରୁ ବି.ଲିଟ୍ ଉପାଧି ପାଇଥିଲେ ।

୧୯୫୩ ମସିହା । ମୁଁ ରେଭେନ୍ସା କଲେଜର ଛାତ୍ର । ମନରେ କୁତୁହଳ, ଇଂରାଜୀ ସାହିତ୍ୟର ମୁଖ୍ୟ ଅଧ୍ୟାପକ ପ୍ରଫେସର ବିଧୁଭୂଷଣ ଦାସଙ୍କୁ ଦେଖିବାକୁ । ରେଭେନ୍ସା କଲେଜର କନିକା ଲାଇବ୍ରେରୀରେ ମୁଁ ତାଙ୍କୁ ପ୍ରଥମେ ଦେଖିଲି । ଯାହାକୁ କୁହନ୍ତି ଇଂରାଜୀରେ ଏକ୍ସଟ୍ରିମଲି ୱେଲ-ଗ୍ରୁମ୍‌ଡ ପ୍ରଫେସର ଅଫ୍ ଲିଟରେଚର । ତାଙ୍କ ମୁହଁଟି ଭାଷା ସାହିତ୍ୟର ଜ୍ଞାନରେ ଉଦ୍ଭାସିତ । ହାତରେ ପ୍ରାୟ ୫ଟା କିମ୍ବା ୬ଟା ମୋଟା ମୋଟା ବହି । ବହିଗୁଡ଼ିକ ଡାହାଣ କାଖରେ ଜାକି ପ୍ରଫେସର ଦାସ କନିକା ଲାଇବ୍ରେରୀରୁ ଯେତେବେଳେ ବାହାରିଲେ, ସମଗ୍ର ଲାଇବ୍ରେରୀ ନିସ୍ତବ୍ଧ ଓ ସବୁ ଛାତ୍ରମାନେ ଚକିତ । ଥରେ ପଢ଼ିଥିଲି ଯେ ବିଶ୍ୱବିଖ୍ୟାତ ଦାର୍ଶନିକ ବର୍ଟାଣ୍ଡ ରସେଲ ଯେତେବେଳେ ଆମେରିକା ପ୍ରଥମଥର ପାଇଁ ଗଲେ, ଆମେରିକାର ପ୍ରିନ୍‌ସଟନ୍ ବିଶ୍ୱବିଦ୍ୟାଳୟରେ ସମସ୍ତେ ଚକିତ ଓ ସ୍ତବ୍ଧ ହୋଇ ଚାହିଁ ରହିଲେ । ମୋର ମନେହୁଏ,

ସେଦିନ ପ୍ରଫେସର ଦାସଙ୍କୁ କନିକା ଲାଇବ୍ରେରୀରେ ଦେଖି ଆମେ ସମସ୍ତେ ପ୍ରାୟ ସେହିପରି ସ୍ତବ୍ଧ ଓ ଚକିତ ହୋଇ ଚାହିଁ ରହିଥିଲୁ ।

ପୁଣି ସେହି ରେଭେନ୍ସା କଲେଜ କଥା । ୧୯୫୭ ମସିହା । ମୁଁ ବି.ଏ. ଅନର୍ସର ଛାତ୍ର । ପ୍ରଫେସର ଦାସ ଆମ କ୍ଲାସରେ ଇଂରାଜୀ କବିତା ପଢ଼ାଇବାକୁ ଆସିଲେ । ଭାଷା ଉପରେ କି ଦଖଲ ! ସାହେବମାନେ ଅକ୍ସଫୋର୍ଡ୍‌ରେ ଯେପରି ଇଂରାଜୀ କହନ୍ତି, ସେହିପରି ଉଚ୍ଚାରଣ । ରୋମାଣ୍ଟିକ୍ କବି ଓ୍ୱଡସ୍‌ଓ୍ୱର୍ଥ୍, କିଟ୍‌ସ୍ ଏବଂ ଶେଲି ପଢ଼ାଇବା ବେଳେ ସେ ଯେପରି ବିଳାତର ସେ ରୋମାଣ୍ଟିକ ଯୁଗକୁ ଫେରି ଯାଉଥିଲେ । ତାଙ୍କ ଲେକଚର୍‌ରେ ମୁଁ ପ୍ରଥମେ ଶୁଣିଲି ବିଶିଷ୍ଟ, ସମାଲୋଚକ ଏଫ. ଆର. ଲିଭିସଙ୍କର ବହି 'ନିଉ ବେଅରିଙ୍ଗସ ଇନ ଇଂଲିସ ପୋଏଟ୍ରି'ର ନାଁ । ତାଙ୍କର ଲେକଚରରେ ହିଁ ଶୁଣିଥିଲି 'ଦି ରୋମାଣ୍ଟିକ ଏଗୋନି' ବହିର ନାଁ, ଲେଖକ ହେଉଛନ୍ତି ବିଶିଷ୍ଟ ସମାଲୋଚକ ମାରିଓ ପ୍ରାଜ୍ । ତାଙ୍କରି କ୍ଲାସରେ ହିଁ ଶୁଣିଥିଲି ଏଫ୍.ଆର୍. ଲିଭିସ୍‌ଙ୍କର ବହି 'ଦି କମନ ପରସୁଇଟ୍'ର ନାଁ । ଏହିପରି ଭାବରେ ବହୁ ଲେଖକ, ସମାଲୋଚକ ଓ ଭାବୁକମାନଙ୍କର ବହି ନାଁ ତାଙ୍କଠାରୁ ଶୁଣି ମୁଁ ସେଗୁଡିକ ପଢ଼ିବା ପାଇଁ ପ୍ରେରଣା ପାଇଥିଲି ।

ସାର୍‌ଙ୍କ ସମ୍ପର୍କରେ ଆଉ ଗୋଟିଏ କଥା ମନେପଡେ । ମୁଁ ରହୁଥିଲି ରେଭେନ୍ସା କଲେଜର ଓ୍ୱେଷ୍ଟ ହଷ୍ଟେଲ୍‌ରେ । ହଷ୍ଟେଲ୍‌ର ବାର୍ଷିକ ଜୟନ୍ତୀ ଉପଲକ୍ଷେ ଅନେକ ପ୍ରତିଯୋଗିତା ସହପାଠୀମାନଙ୍କ ମଧ୍ୟରେ ହେଲା । ମୁଁ ସେଥିରେ ପୁରସ୍କାର ପାଇଥାଏ । ଶେଷକୁ ଥିଲା ତିନିଜଣ ବିଶିଷ୍ଟ ପ୍ରଫେସରଙ୍କ ଦ୍ୱାରା ଗଠିତ ଇଣ୍ଟରଭ୍ୟୁ ବୋର୍ଡ ଏବଂ ସେ ବୋର୍ଡ ଇଣ୍ଟରଭ୍ୟୁ ପ୍ରତିଯୋଗିତା କରିବେ । ଅନେକ ଛାତ୍ର ସେଥିରେ ଭାଗ ନେଲେ । ଇଣ୍ଟରଭ୍ୟୁ ଟେଷ୍ଟ୍ ଦିନ ହଲ୍‌ଟି ଭରପୂର । ସହପାଠୀ ଓ କଲେଜର ଅନ୍ୟାନ୍ୟ ଛାତ୍ରମାନେ ଦର୍ଶକମଣ୍ଡଳୀରେ ସମବେତ ଥିଲେ । ଇଣ୍ଟରଭ୍ୟୁ ବୋର୍ଡ୍‌ର ଚେୟାରମ୍ୟାନ ଥିଲେ ସ୍ୱର୍ଗୀୟ ପ୍ରଫେସର ବିଧୁଭୂଷଣ ଦାସ ଓ ବୋର୍ଡର ଅନ୍ୟ ଦୁଇଜଣ ମେମ୍ବର ଥିଲେ ଓଡ଼ିଶାର ସ୍ୱନାମଧନ୍ୟ ଇଂରାଜୀ ଅଧ୍ୟାପକ ଡକ୍ଟର ପ୍ରଫୁଲ୍ଲ କୁମାର ପତି ଓ ରାଜନୀତି ବିଜ୍ଞାନର ସ୍ୱନାମଧନ୍ୟ ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ । ଇଣ୍ଟରଭ୍ୟୁ ଆରମ୍ଭ ହେଲା । ଇଂରାଜୀ ଭାଷାରେ ପ୍ରଶ୍ନ ଓ ଇଂରାଜୀ ଭାଷାରେ ଉତ୍ତର । ମୋର ଇଣ୍ଟରଭ୍ୟୁ ହେଲା । ସେତେବେଳେ ମୁଁ ଅତି ପତଳା ଥିଲି । ସ୍ୱର୍ଗୀୟ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ମତେ ପ୍ରଥମରୁ ପଚାରିଲେ ମୋର ଓଜନ କେତେ ପାଉଣ୍ଡ । ମୁଁ ମୋ ଓଜନ କହିବା ପରେ ପ୍ରଫେସର ବିଧୁଭୂଷଣ ଦାସ ପଚାରିଲେ, ''ଓଜନ' ଅର୍ଥାତ୍ 'ଓ୍ୱେଟ୍'ର ଅର୍ଥ କ'ଣ'' ମୁଁ କହିଲି ଯେ ''ମାଇଁ ଓ୍ୱେଟ୍ ଇଜ୍ ଦି ଫୋର୍ସ ବାଏ ହୁଇଚ ଦି ସେଣ୍ଟର ଅଫ ଦି ଆର୍ଥ ଆଟ୍ରାକ୍ଟସ ମି ଟୁଓ୍ୱାର୍ଡସ ଇଟ୍'' । ଇଣ୍ଟରଭ୍ୟୁ ବୋର୍ଡ ବୋଧହୁଏ ମୋ'

ଠାରୁ ଏପରି ଉତ୍ତର ଆଶା କରିନଥିଲେ । ତେଣୁ ସେମାନେ ମତେ ପଚାରିଲେ, "ତୁମେ କଣ ଫିଜିକ୍ସର ଛାତ୍ର ?" ମୁଁ କହିଲି ଯେ ମୁଁ ଇତିହାସର ଛାତ୍ର । ତା ପରେ ଇତିହାସ ସମ୍ବନ୍ଧରେ ପ୍ରଶ୍ନ ଉପରେ ପ୍ରଶ୍ନ । "ଡଜ୍ ହିଷ୍ଟ୍ରି ରିପିଟ ଇଟସେଲ୍ଫ ? ଇଜ୍ ହିଷ୍ଟ୍ରି ଏ ରେକର୍ଡ ଅଫ କ୍ଲାସ ଷ୍ଟ୍ରଗଲ ? ହ୍ୱାଟ ଇଜ୍ ଦି ପ୍ଲେସ୍ ଅଫ୍ ଜବାହରଲାଲ ନେହେରୁ ଇନ୍ ହିଷ୍ଟ୍ରି ?" ଇତ୍ୟାଦି ।

ପରିଶେଷରେ ପ୍ରଫେସର ବିଧୁଭୂଷଣ ଦାସ ପଚାରିଲେ ଯେ ମୁଁ କୌଣସି ଇଂରାଜୀ କବିତା ମନେ ରଖିଛି କି ନାହିଁ ? ମୁଁ ଓ୍ୱାର୍ଡ଼ସ୍ ଓର୍ଥ୍‌ଙ୍କର 'ଦି ସଲିଟାରି ରିପର' ପୁରା ଆବୃତ୍ତି କରିଦେଲି । ମୋ ଇଣ୍ଟରଭ୍ୟୁ ଶେଷ ହେଲା । ମୁଁ ଫେରି ଆସି ଦର୍ଶକମଣ୍ଡଳୀରେ ବସିଲି ।

ଅନ୍ୟ ସବୁ ପ୍ରତିଯୋଗୀଙ୍କର ଇଣ୍ଟରଭ୍ୟୁ ସରିଲା ପରେ ପ୍ରାୟ ଦୁଇଘଣ୍ଟା ସମୟ ବିତି ଯାଇଥିଲା । ଇଣ୍ଟରଭ୍ୟୁ ସବୁ ସରିଲା ପରେ ସଙ୍ଗେ ସଙ୍ଗେ ଇଣ୍ଟରଭ୍ୟୁର ଫଳାଫଳ ଘୋଷଣା କଲେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ । ସେ କହିଲେ ଯେ ଇଣ୍ଟରଭ୍ୟୁରେ ଯିଏ ପ୍ରଥମ ହୋଇଚି, ସେ ପୃଥକ ଭାବରେ ପ୍ରତି ମେମ୍ବରଙ୍କଠାରୁ ୧୦୦ ମାର୍କରୁ ୯୦ ମାର୍କ ପାଇଛି ଓ ତାର ମାର୍କ ହେଲା ୩୦୦ରୁ ୨୭୦ । ସମସ୍ତେ ଉଦ୍‌ବିଗ୍ନ ହୋଇ ଶୁଣିବାକୁ ବସିଲେ । କିଏ ଫାଷ୍ଟ ହୋଇଛି ? ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ କହିଲେ, 'ଫାଷ୍ଟ ହୋଇଛି.......ଏହା କହି ସେ ଟିକିଏ ରହିଗଲେ । ଦର୍ଶକମଣ୍ଡଳୀ ଆଉରି ଉଦ୍‌ବିଗ୍ନ ହୋଇ ଉଠିଲେ । ଟିକିଏ ସମୟ ରହି ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ କହିଲେ, "ଫାଷ୍ଟ ହୋଇଛି ଯିଏ ତାର ଓଜନ ଅତି କମ୍- ପୂର୍ଣ୍ଣଚନ୍ଦ୍ର ହୋତା ।"

ଚାରିଆଡେ ତାଳିର ଲହରି ଖେଳିଗଲା । ଚେୟାରମ୍ୟାନ ହିସାବରେ ପ୍ରଫେସର ବିଧୁଭୂଷଣ ଦାସ ମତେ ତାଙ୍କ ପାଖକୁ ଡାକିଲେ ଏବଂ ସମସ୍ତଙ୍କ ଉପସ୍ଥିତିରେ କହିଲେ, "ୱେଲ ଡନ୍ । କିପ ଇଟ୍ ଅପ । ଆଇ ସି ଏ ବ୍ରାଇଟ ଫ୍ୟୁଚର ଫର ୟୁ' ।"

ସେସବୁ କଥା ଆଜି ମନେ ପଡିଲେ ଆଖି ଛଳଛଳ ହୋଇଉଠେ । କି ପ୍ରେରଣା, କି ଉତ୍ସାହ ଓ କି ଉଦ୍ଦୀପନା ସେ ମତେ ସେଦିନ ଦେଇଥିଲେ ।

୧୯୬୨ ମସିହା ମାର୍ଚ୍ଚ ମାସରେ ଆଇ.ଏ.ଏସ୍ ପରୀକ୍ଷା ଫଳ ବାହାରିଲା । ମୁଁ କୃତକାର୍ଯ୍ୟ ହୋଇଥିଲି ଏବଂ ସର୍ବଭାରତୀୟ ସ୍ତରରେ ମୋ ସ୍ଥାନ ଅତି ଉଚ୍ଚରେ ଥିଲା । ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ ଓଡ଼ିଶାରେ ନଥିଲେ । ସେ କାଠମାଣ୍ଡୁସ୍ଥିତ ତ୍ରିଭୂବନ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ଭାବେ ଡେପୁଟେସନରେ ଯାଇଥିଲେ । କାଠମାଣ୍ଡୁରୁ ସେ ମୋତେ ଅଭିନନ୍ଦନ ଜଣାଇ ଲେଖିଥିଲେ । ସେ ଚିଠିରେ ମତେ ମୋର ଓ୍ୱେଷ୍ଟ ହଷ୍ଟେଲରେ ହୋଇଥିବା ଇଣ୍ଟରଭ୍ୟୁ ଟେଷ୍ଟ କଥା ସ୍ମରଣ କରାଇ ଦେଇଥିଲେ । ସେ ଲେଖିଥିଲେ ସେ ସେଇଦିନ ଠାରୁ ଜାଣିଥିଲେ ଯେ ମୁଁ ଆଇ.ଏ.ଏସ୍. ପରୀକ୍ଷା ଦେଲେ ନିଶ୍ଚୟ କୃତକାର୍ଯ୍ୟ ହେବି ।

ଆଜି ପ୍ରଫେସର ବିଧୁଭୂଷଣ ଦାସ ନାହାନ୍ତି । କିନ୍ତୁ ତାଙ୍କର ଗୁଣମୁଗ୍ଧ ଅନେକ ଛାତ୍ର ଓ ଛାତ୍ରୀ ଦେଶ ବିଦେଶର ବିଭିନ୍ନ ସ୍ଥାନରେ ଉଚ୍ଚପଦବୀରେ ଅଛନ୍ତି । ସେହି ଅଗଣିତ ଛାତ୍ରଛାତ୍ରୀଙ୍କ ତରଫରୁ ମୁଁ ତାଙ୍କ ଆତ୍ମାକୁ ଆଜି ଶ୍ରଦ୍ଧାଞ୍ଜଳି ଜଣାଉଛି । ସେ ନାହାନ୍ତି । କିନ୍ତୁ ସେ ଆଜି ଅମର ।

ସଦସ୍ୟ
ୟୁନିୟନ୍ ପବ୍ଲିକ୍ ସର୍ଭିସ୍ କମିଶନ୍

# ପ୍ରଫେସର ଦାସଥିଲେ ବୁଦ୍ଧି, ବିଦ୍‌ବତ୍ତା ଓ ବିବେକର ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ

*ଜଗନ୍ନାଥ ମହାନ୍ତି*

ଆଜିକାଲି ଅନେକ ଥା'ନ୍ତି ଯେଉଁମାନେ ହଲିଲା ପାଣିରେ ଗୋଡପୂରାନ୍ତି ନାହିଁ । ସେମାନେ ନ୍ଦ୍‌ନ୍ଦ୍ରେ ମାପି ଚାଖଣ୍ଡେ ଚାଲନ୍ତି । କାହାର ସୁଖଦୁଃଖରେ ସେମାନେ ମୁଣ୍ଡ ଘୂରାନ୍ତି ନାହିଁ । କାହା ପ୍ରତି ଅନ୍ୟାୟ ହେଲେ ଆଖିବୁଜି ଦିଅନ୍ତି । ମାତ୍ର ଆଉ କେତେ ଜଣ ମହାପୁରୁଷ ଥାନ୍ତି, ଯେଉଁମାନେ ଅନ୍ୟର ସୁଖଦୁଃଖରେ ସାଥୀ ହୁଅନ୍ତି; ବିପଦ ଆପଦରେ ଆହା କରନ୍ତି, ଅନ୍ୟାୟର ବିରୋଧ କରନ୍ତି, ଭଲ କାମଟିରେ ମିଶିବା ଓ କରିବାରେ ସେମାନଙ୍କର ଥାଏ ଆନନ୍ଦ । ଏହି ଭଳି ଜଣେ ମହାନ ବ୍ୟକ୍ତିତ୍ୱ ଥିଲେ ପ୍ରଫେସର ବିଧୁଭୂଷଣ ଦାସ । ସବୁ ସତ୍ କାର୍ଯ୍ୟରେ ଥାଏ ତାଙ୍କର ସହୃଦୟ ସହଯୋଗ ଓ ଆଶୀର୍ବାଦ ।

ବହୁ ଅସୁବିଧାରେ ସେ ଆଗେଇ ଆସନ୍ତି, ଆହା କରିବାକୁ, ଭୁଲ କାମରେ ଆଶିଷ ଦେବାକୁ, ଉତ୍ସାହ ଦେବାକୁ । ଅନେକେ ତାଙ୍କ ନିକଟରେ ଋଣୀ । ଅବଶ୍ୟ ଆଜିକାଲିର ମଣିଷ ସାଧାରଣତଃ ଚାର୍ବାକ ଋଷିଙ୍କର ଭକ୍ତ, ଋଣଂକୃତ୍ୱା ଘୃତଂ ପିବେତ୍ ଦର୍ଶନର ପ୍ରିୟ । କାହାର ଉପକାରକୁ ସେମାନେ ସହଜରେ ଭୁଲିଯାନ୍ତି, ଋଣ ନେଲା ବେଳର କଥା ମନେ ରଖନ୍ତି ନାହିଁ । ଯାହାର ଥିଲା ସେ ଦେଲା, ଯାହା କଲା, ତାର ସେ କର୍ତ୍ତବ୍ୟ ଥିଲା ଭାବି ଅନ୍ୟର ଋଣକୁ ପାଶୋରି ଦିଅନ୍ତି । ସାର୍ ଆମର କାହାଠାରୁ କିଛି ଅପେକ୍ଷା ନରଖି ନିଜର କର୍ତ୍ତବ୍ୟ କରିଯା'ନ୍ତି । କେହି ତାଙ୍କ ପଛରେ କ'ଣ କହିଲେ ସେ ଶୁଣନ୍ତି ନାହିଁ । ସେ ନିରନ୍ତର ଧୀରସ୍ଥିର, ସ୍ଥିତପ୍ରଜ୍ଞ ଓ କ୍ଷମାଶୀଳ ।

୧୯୯୫ ମସିହା ଜାନୁଆରୀ ୩୧ ତାରିଖରେ ମୋର ସରକାରୀ ଚାକିରୀରୁ ଅବସର ଗ୍ରହଣ । ସେତେବେଳେ ମୁଁ ରାଧାନାଥ ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନର ଅଧ୍ୟକ୍ଷ ଥିଲି; ସେଠାରେ ଗୋଟିଏ ଉତ୍ସବର ଆୟୋଜନ କଲି । ସହକର୍ମୀ ବନ୍ଧୁ ଓ ଛାତ୍ରଛାତ୍ରୀଗଣ ସହଯୋଗ କଲେ । ରାଜ୍ୟର ସମସ୍ତ ବରିଷ୍ଠ ତଥା ଅବସରପ୍ରାପ୍ତ ଅଧ୍ୟକ୍ଷ- ପ୍ରଫେସର ଶତ୍ରୁଘ୍ନ ନାଥ, ପ୍ରଫେସର ରାଧାଚରଣ ଦାସ, ଭୋଳାନାଥ ମିଶ୍ର, କେଶବଚନ୍ଦ୍ର ପତି ପ୍ରମୁଖଙ୍କୁ ସମ୍ବର୍ଦ୍ଧନା ଦେବା ଉକ୍ତ ଉତ୍ସବର ଉଦ୍ଦେଶ୍ୟ । ଏଥିରେ ମୁଖ୍ୟ ଅତିଥି ହେବାକୁ ସାର୍‌ଙ୍କୁ ଅନୁରୋଧ କଲି । ସବୁଥର ପରି ସେ ବିନା ଦ୍ୱିଧାରେ ସମ୍ମତ

ହେଁ । କିନ୍ତୁ ଗୋଟିଏ କଥା କରିବାକୁ ସୂଚନା ଦେଲେ- ବରିଷ୍ଠ ଶିକ୍ଷାବିତ୍ ଶ୍ରୀ ରାମଚନ୍ଦ୍ର ମହାପାତ୍ର ଅଳ୍ପ କେତେଦିନ ପୂର୍ବରୁ ଇହଲୀଳା ସାଙ୍ଗ କରିଥିଲେ । ସେ ଦିନର ଉତ୍ସବରେ ତାଙ୍କ ଘରକୁ ଯିବା ପାଇଁ ତାଙ୍କର ଇଚ୍ଛା ।

. ଉକ୍ତ ଭବ୍ୟ ସମାରୋହରେ ସେଦିନ ସେ ଆନନ୍ଦାଭିଭୂତ ହୋଇ ଦଶଜଣ ପ୍ରବୀଣ ଶିକ୍ଷାବିତ୍‌ଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ତାପରେ ଆମେ ସାଥି ହୋଇ ଶ୍ରୀରାମବାବୁଙ୍କ ଘରକୁ ଯାଇଥିଲୁ । ସାର୍ ତାଙ୍କ ପରିବାରର ସଭ୍ୟମାନଙ୍କ ସହିତ ସୁଖଦୁଃଖ ହେଲେ । ଶ୍ରୀରାମବାବୁଙ୍କର ସରଳତା, ସୌଜନ୍ୟ ଓ ସାଧୁତା ବିଷୟରେ ଆଲୋଚନା ହେଲା । ତାଙ୍କ ଫଟୋ ପାଖରେ ପ୍ରଣତି ଜଣାଇ ଆମେ ବିଦାୟ ନେଲୁ । ବାଟରେ କଥାବାର୍ତ୍ତା ହୋଇ ଆସିବା ଭିତରେ ମୁଁ ପିତାମାତାଙ୍କ ସ୍ମୃତିରେ ଏକ ନ୍ୟାସ ଗଠନ କରିଛି ଶିଶୁ ସାହିତ୍ୟ ଓ ଶିଶୁ ଶିକ୍ଷାର ଉନ୍ନତି କଳ୍ପେ, ବୋଲି ଜଣାଇଲି । ସାର୍ ଖୁବ୍ ଉତ୍‌ଫୁଲ୍ଲ ହୋଇଗଲେ । ମୋତେ କହିଲେ- 'ଜଗନ୍ନାଥ, ଭାରି ଭଲ କଥାଟିଏ କରିଛ । ମୋତେ ତାର Registration Deed ର ଗୋଟିଏ Xerox କପି ଦେବ, ଦେଖିବା ।' ତା'ପରେ ମୁଁ ଗୋଟିଏ କପି ସାର୍‌ଙ୍କୁ ଦେଇଥିଲି ଏବଂ ସେ ତାକୁ ପାଠ କରି ମୋତେ କେତୋଟି କଥା ପଚାରି ବୁଝିଲେ । ସମ୍ଭବତଃ ସେହିପରି କ'ଣ କରିବାକୁ ଭାବିଥିଲେ ।

ଆମ ନ୍ୟାସର ପ୍ରଥମ ବାର୍ଷିକୀ ଉତ୍ସବରେ ସାର୍‌ଙ୍କୁ ମୁଁ ଅଧ୍ୟକ୍ଷତା କରିବାକୁ ଅନୁରୋଧ କଲି । ସେ ଆନନ୍ଦରେ ମୋର ଅନୁରୋଧ ରକ୍ଷା କରି ଅନୁଗୃହିତ କରିଥିଲେ । ୧୯୯୬ ମସିହା ଅକ୍ଟୋବର ମାସରେ ଭଞ୍ଜ କଳାମଣ୍ଡପରେ ଉକ୍ତ ଉତ୍ସବଟି ପାଳିତ ହେଲା । ସାର୍ ଶ୍ରୀଜଗନ୍ନାଥଙ୍କ ଫଟୋ ପାଖରେ ମାଲ୍ୟାର୍ପଣ କରି ପ୍ରଦୀପ ପ୍ରଜ୍ୱଳିତ କଲେ । ପ୍ରଫେସର ନାଥ ମୁଖ୍ୟ ଅତିଥି ହେଲେ ଓ ପ୍ରଫେସର ଉତ୍ପଳ ହେମରାୟ ସମ୍ମାନିତ ଅତିଥି ଭାବରେ ଯୋଗ ଦେଲେ । ସାର୍ ସ୍ୱନାମଧନ୍ୟ ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ରାମପ୍ରସାଦ ମହାନ୍ତି ଓ ବିଶିଷ୍ଟ ଶିକ୍ଷକ ଶ୍ରୀମାନ ପ୍ରାଣବଲ୍ଲଭ ପାଢ଼ୀଙ୍କୁ ୫ ହଜାର ଟଙ୍କାର ମାଣିକ-ବିଶ୍ୱନାଥ ସ୍ମୃତିସମ୍ମାନ ପ୍ରଦାନ କଲେ । ସାର୍‌ଙ୍କର ଗଭୀର ଆନନ୍ଦ । ସେ ନ୍ୟାସର ଲକ୍ଷ୍ୟ ଓ କାର୍ଯ୍ୟକୁ ଖୁବ୍ ପ୍ରଶଂସା କଲେ । ମୁଁ ମଧ୍ୟ ଏହି ଅବସରରେ ଅନ୍ୟ ଅତିଥିମାନଙ୍କ ସହିତ ସାର୍‌ଙ୍କୁ ସମ୍ବର୍ଦ୍ଧନା ଜଣାଇବାର ସୌଭାଗ୍ୟ ଲାଭ କରିଥିଲି ।

ସଦିଚ୍ଛା, ସଦାଚାର, ସତ୍ୟନିଷ୍ଠା ଓ ଶୃଙ୍ଖଳାର ପଟ୍ଟପୁରୋଧା ହେଉଛନ୍ତି ପ୍ରଫେସର ବିଧୁଭୂଷଣ ଦାସ । ସମସ୍ତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସାଧୁକାର୍ଯ୍ୟରେ ତାଙ୍କର ସକ୍ରିୟ ଯୋଗଦାନ । ସବୁରି ପାଇଁ ତାଙ୍କର ସଦିଚ୍ଛା ଥିଲା ଅପାର । ଓଡ଼ିଆ ଜାତିର ଉନ୍ନତି ପାଇଁ ସେ ଥିଲେ ସର୍ବଦା ଚିନ୍ତିତ । ତାଙ୍କୁ ଯେତେବେଳେ ମୁଁ ସାକ୍ଷାତ କରିଛି,

ସେତେବେଳେ ସାଂପ୍ରତିକ ଶିକ୍ଷା, ଭାଷା, ସାହିତ୍ୟ ଓ ରାଜନୀତିରେ ଦୃଢ଼ ମତାମତ ଶୁଣିଥାଏ । ଗତଥର ସମ୍ଭବତଃ ଏହି ୧୯୯୯ ମସିହାର ଏପ୍ରିଲ ମାସରେ ସାର୍‌ଙ୍କୁ ମୁଁ ଦେଖା କରିବାକୁ ଯାଇଥିଲି । ମଧ୍ୟାହ୍ନ ସମୟ ହୋଇଥିବାରୁ ଉପରୁ ଜଣେ ବ୍ୟକ୍ତି ଜଣାଇଲେ- ''ସାର୍, ବିଶ୍ରାମ ନେଉଛନ୍ତି ।'' ମୁଁ ତାଙ୍କୁ କହିଲି- ''ଯଦି ସାର୍ ଶୋଇନଥିବେ, ଟିକିଏ କହିଦେବେ ମୁଁ ଜଗନ୍ନାଥ ଆସିଛି ।'' ସାର୍ ସମ୍ଭବତଃ ଗଡପଡ ହେଉଥିଲେ ବା ବସି କ'ଣ ପତ୍ରପତ୍ରିକା ଦେଖୁଥିଲେ । ମୋ ନାଁ ଶୁଣି ସାର୍ ଡକାଇଲେ ଏବଂ ମୁଁ ଭିତରକୁ ଯାଇ ଅଧଘଣ୍ଟା କାଳ ସୁଖଦୁଃଖ ହେଲି । ସେତେବେଳେ ତାଙ୍କର ଶାରୀରିକ ଦୁର୍ବଳତା ସତ୍ତ୍ୱେ ମାନସିକ ଔଜ୍ଜଲ୍ୟରେ କିଞ୍ଚିତ ହ୍ରାସ ହୋଇନଥିଲା । ଅବଶ୍ୟ କାହା ସମ୍ପର୍କରେ ତାଙ୍କର କୌଣସି ଅଶାନ୍ତି ବା ଅଭିଯୋଗ ନଥିଲା ବରଂ ମୋ ପ୍ରତି ଥିବା ତାଙ୍କର ଶ୍ରଦ୍ଧା ଓ ସଦିଚ୍ଛା ଜଣାଇ ମୋତେ ଆଗେଇଯିବାକୁ ଉପଦେଶ ଦେଇଥିଲେ । ମୁଁ ସେଦିନ ତାଙ୍କଠାରୁ ଅନ୍ତିମ ବାର୍ତ୍ତା ଲାଭ କରୁଛି ବୋଲି ଜାଣି ପାରି ନଥିଲି ।

୧୯୭୫ ମସିହାରେ ପ୍ରଥମ ଥର ପାଇଁ ଗୋଟିଏ କୃତ୍ରିମ ଉପଗ୍ରହ ବର୍ଷକ ପାଇଁ ଆମେରିକାରୁ ଧାର ଆଣି ଆମ ଦେଶର ଓଡ଼ିଶା ସହିତ ୬ଟି ରାଜ୍ୟରେ ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀ ଓ ଗ୍ରାମବାସୀଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମର ବ୍ୟବସ୍ଥା ହୋଇଥିଲା । ସାର୍ ମୋତେ ଏହି ପରିଯୋଜନାର ପରିଚାଳନା ପାଇଁ ଦାୟିତ୍ୱ ଦେଇଥିଲେ ଏବଂ ମୁଁ ତାଙ୍କ ଅଫିସ (ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟ)ରେ ଯୋଗଦେଇ ଏହି କାର୍ଯ୍ୟର ସଫଳତା ପାଇଁ ଥିଲି କର୍ତ୍ତବ୍ୟରତ । ସାର୍ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଭାବରେ ଏହି କାର୍ଯ୍ୟରେ ମୋତେ ଦିଗ୍‌ଦର୍ଶନ ଓ ସ୍ୱାଧୀନତା ଦେଇଥିଲେ । ତେଣୁ ସମଗ୍ର ଦେଶରେ ଆମ କାର୍ଯ୍ୟର ସାଫଲ୍ୟ ପ୍ରଶଂସନୀୟ ହୋଇଥିଲା । ଆମର ପ୍ରକାଶନଗୁଡିକ ସଂଖ୍ୟାତ୍ମକ ଓ ଗୁଣାତ୍ମକ ଦୃଷ୍ଟିକୋଣରୁ ଉଚ୍ଚକୋଟୀରେ ଥିଲା । ସ୍ୱଳ୍ପକାଳୀନ ଓ ଦୀର୍ଘକାଳୀନ ତାଲିମ୍ ଏବଂ ଶିକ୍ଷକ ପରିଦର୍ଶକଙ୍କ ସହିତ ଭିନ୍ନ ଭିନ୍ନ ସଭାସମିତିରେ ଟି.ଭି. କାର୍ଯ୍ୟକ୍ରମର ସଦୁପଯୋଗ ଓ ସମସ୍ୟା ସମ୍ପର୍କରେ ଆଲୋଚନା କରାଇ ପ୍ରକଳ୍ପର ପ୍ରଗତି ତ୍ୱରାନ୍ୱିତ କରାଯାଉଥିଲା । ଏଥିରେ ସାର୍‌ଙ୍କର ନେତୃତ୍ୱ ଓ ପ୍ରେରଣା ହିଁ ଥିଲା ମୁଖ୍ୟତଃ ଦାୟୀ ।

ଏହି କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଶିକ୍ଷକ-ଚରିତ୍ର ପ୍ରଧାନ ଗଳ୍ପଗୁଡିକର ଏକ ସଂକଳନ ''ଶିକ୍ଷକ ସେ ଅଲିଭା ଆଲୋକ'' ପ୍ରକାଶିତ ହୋଇଥିଲା ୧୯୭୫ ମସିହାରେ । ଶିକ୍ଷକମାନଙ୍କୁ ପ୍ରେରଣା ପ୍ରଦାନ କରିବା ଓ କୃତବିଦ୍ୟ ଶିକ୍ଷକମାନଙ୍କ ସେବା ଓ ତ୍ୟାଗର କାହାଣୀ ପାଠ କରିବାର ସୁଯୋଗ ଦେବା ଥିଲା ଉକ୍ତ ସଂକଳନର ଉଦ୍ଦେଶ୍ୟ । ବିଦ୍ୟାପୁରୀର ସ୍ୱତ୍ୱାଧିକାରୀ ପୀତାମ୍ବରବାବୁ ନୂତନ ଧରଣର ବହିଟିଏ

ହୌଁଇଣ୍ଟି ତାରୁ ଉନ୍ମୋଚନ କରିବାକୁ ଚାହିଁଲେ । ମୁଁ ମଧ୍ୟ ଏଥିରେ ରାଜି ହୋଇ ସାର୍‌ଙ୍କୁ ଉନ୍ମୋଚନ କରିବାକୁ ଅନୁରୋଧ କରିଥିଲି । ସେ ଆନନ୍ଦରେ ଏହି କାର୍ଯ୍ୟଟି ସଂପାଦନ କରି ଆମର ସାଧୁ ଉଦ୍ୟମକୁ ଭୂୟସୀ ପ୍ରଶଂସା କରିଥିଲେ ।

ସବୁଠାରୁ ଉତ୍ସାହପ୍ରଦ ଓ ପ୍ରତିଭାଦୀପ୍ତ ସଂଦେଶଟିଏ ସାର୍‌ଙ୍କ ଠାରୁ ଲାଭ କରିଥିଲି ପ୍ରଫେସର ନାଥଙ୍କ ଜୀବନ ଓ କୃତିତ୍ୱ ସମ୍ପର୍କରେ ଲେଖାଗୁଡିକର ସଂକଳନ ''ଶିକ୍ଷକ ସେ ଚିରଦୀପ୍ତିମାନ'' ୧୯୯୫ର ମୁଖବନ୍ଧ ମାଧ୍ୟମରେ । ତାଙ୍କ ପରି ଶିକ୍ଷାକ୍ଷେତ୍ରରେ ଶିଖରସ୍ଥାନରେ ଉପନୀତ ମହାନ୍ ବ୍ୟକ୍ତିତ୍ୱ କେତେ ଅନ୍ତରଙ୍ଗ ଓ ସୌଜନ୍ୟପୂର୍ଣ୍ଣ ଭାବରେ ସ୍ୱମତକୁ ପ୍ରକାଶ କରି କହିଛନ୍ତି- ''ପ୍ରଫେସର ଶତ୍ରୁଘ୍ନ ନାଥ ଓ ମୁଁ ଭଦ୍ରକ ହାଇସ୍କୁଲରେ ଛାତ୍ର ଥିଲୁ । ଆମର ପ୍ରଧାନ ଶିକ୍ଷକ ଥିଲେ ସ୍ୱର୍ଗୀୟ ଗୋକୁଳାନନ୍ଦ ନାୟକ, ଯାହାଙ୍କର ପ୍ରଭାବ ଆମ ଦୁହିଁଙ୍କ ଉପରେ ପଡିଥିଲା । ସେହି ସ୍କୁଲ ଦିନଠାରୁ ମୁଁ ପ୍ରଫେସର ନାଥଙ୍କୁ ବିଶିଷ୍ଟ ବନ୍ଧୁ ଓ ସହକର୍ମୀ ଭାବରେ ଜାଣିଆସିଛି । ତାଙ୍କ ପାଇଁ ଉଦ୍ଦିଷ୍ଟ ଏହି ଅଭିନବ ଗ୍ରନ୍ଥର କ୍ଷୁଦ୍ର ମୁଖବନ୍ଧ ଲେଖିବା ପାଇଁ ସୁଯୋଗ ପାଇ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ଏବଂ ଶ୍ରଦ୍ଧେୟ ଜଗନ୍ନାଥ ମହାନ୍ତିଙ୍କୁ କୃତଜ୍ଞତା ଜଣାଉଛି ।'' କି ଉଦାରତା ! କି ମହାନୁଭବତା ! କି ସଦିଚ୍ଛା !

''କ୍ଷୁଦ୍ର ମୁଖବନ୍ଧ'' ବୋଲି ଯାହାକୁ ସାର୍ କହିଛନ୍ତି, ତାହାଥିଲା ନଅପୃଷ୍ଠାର ଦୀର୍ଘ ପାଣ୍ଡିତ୍ୟପୂର୍ଣ୍ଣ ପର୍ଯ୍ୟାଲୋଚନା । ଏଥିରେ ସେ ବିବେକାନନ୍ଦ, ଫୁକିୟାମା, ହେଗେଲ, ସକ୍ରେଟିସ୍, କାର୍ଲ ଜାସପର୍‌ସ, ଗାନ୍ଧିଜୀ, ରାଇଟ୍ ମିଲ୍, ଗୁନାର ମିର୍ଦ୍ଦାଲ, ଭି.ଏସ୍. ନାଏପଲ୍, ଗୁଡମ୍ୟାନ, ରେଇମର୍, ଗିଲବର୍ଟ ହ୍ୱାଇଟ ପ୍ରମୁଖ ବିଦ୍ୱାନମାନଙ୍କ ମନ୍ତବ୍ୟ ଓ ଦର୍ଶନର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଇଂରେଜ ସାହିତ୍ୟରେ ତାଙ୍କର ବିଦ୍‌ବତ୍ତା ସମସ୍ତଙ୍କୁ ମୁଗ୍ଧ କରିଥାଏ । ଶିକ୍ଷାକ୍ଷେତ୍ରରେ ଆମର ଦୋଷତ୍ରୁଟି ତାଙ୍କୁ ଗଭୀର ମାନସିକ ବ୍ୟଥା ଦେଇଛି । ଏଥିଯୋଗୁଁ ମାରାତ୍ମକ ଜାତୀୟ କ୍ଷତି ଘଟୁଛି ବୋଲି ମତଦେବା ସଙ୍ଗେ ସଙ୍ଗେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ସେ ଯୁବକମାନଙ୍କୁ ଉପଦେଶ ଦେଇଛନ୍ତି । ପ୍ରଫେସର ଦାସ ଯଥାର୍ଥରେ କହିଛନ୍ତି-'' ସେହି ଦୃଷ୍ଟିରୁ ଆମର ପରିଚୟ ପ୍ରାୟ ନାହିଁ କହିଲେ ଚଳେ । ଉଦାହରଣ ସ୍ୱରୂପ, ଜଣେ ଓଡ଼ିଆ ଏ ପର୍ଯ୍ୟନ୍ତ Lt. General ହୋଇ ନାହିଁ, Cabinet Secretary ହୋଇ ନାହିଁ । ଅନ୍ୟ ରାଜ୍ୟରେ ମୁଖ୍ୟ ଶାସନ ସଚିବ ବା ଆରକ୍ଷୀ ନିର୍ଦ୍ଦେଶକ ହୋଇନାହିଁ । ଅରାଜନୈତିକ ରାଜ୍ୟପାଳ ବା ରାଷ୍ଟ୍ରଦୂତ ହୋଇନାହିଁ । ଏହି ସୂଚୀର ଶେଷ ନାହିଁ । ଏମାନେ କାହାଦ୍ୱାରା ଗଢ଼ାଯିବେ ? ରାଜନୀତିଜ୍ଞମାନଙ୍କ ଦ୍ୱାରା ନାଁ ଶିକ୍ଷକମାନଙ୍କ ଦ୍ୱାରା ଏବଂ କେବେ ?'' ଏଥିରେ ଅଭିବ୍ୟକ୍ତ ହୋଇଛି ଓଡ଼ିଆ ଜାତି ପାଇଁ ସାର୍‌ଙ୍କ ସ୍ୱାଭିମାନ ଓ ଉଦ୍‌ବିଗ୍ନତା । ସାର୍‌ଙ୍କ ପ୍ରଶ୍ନ ସବୁ ଖୁବ୍ କଠିନ ଓ ଅର୍ଥପୂର୍ଣ୍ଣ ।

ଓଡ଼ିଆ ତାର ପ୍ରତିଭାଧରଙ୍କ କୃତିତ୍ୱକୁ ଅବହେଳା କରେ । ପ୍ରଶଂସା ପରିବର୍ତ୍ତେ ନିନ୍ଦା କରେ । ସାର୍‌ଙ୍କ ଜୀବନର ଏକ ଦାରୁଣ ଦୁଃଖଦାୟକ ଘଟଣା ଥିଲା ଉଚ୍ଚଶିକ୍ଷା ନିର୍ଦ୍ଦେଶକ ପଦରୁ ଦୟନୀୟ ଅବସ୍ଥାରେ ଥିବା ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ (ଯାହା ପରେ ତାଙ୍କ ବ୍ୟକ୍ତିତ୍ୱ ବଳରେ ମହିମାମଣ୍ଡିତ ହୋଇ ଏସ୍.ସିଇ.ଆର.ଟି ଭାବରେ ଉନ୍ନୀତ ହୋଇଥିଲା) ସ୍ଥାନାନ୍ତର । ମାତ୍ର ଏଥିପାଇଁ କେତେକାଂଶରେ ଦାୟୀ ବା ସଂପୃକ୍ତ ବୋଲି କୁହାଯାଉଥିବା ଜଣଙ୍କ ପ୍ରତି ତାଙ୍କର ଉଦାର ମନୋଭାବ ସତେ କି ଆଶ୍ଚର୍ଯ୍ୟଜନକ । ସେ ଉକ୍ତ ମୁଖବନ୍ଧରେ ପୁଣି ଲେଖିଛନ୍ତି, ''ଉଦାହରଣ ସ୍ୱରୂପ, ଆମେ ରାଜ୍ୟର ଦୁଇ ବିଶିଷ୍ଟ କବି ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଯେକି ଆମ ରାଜ୍ୟ ପାଇଁ ଗୌରବ ଅର୍ଜନ କରିଛନ୍ତି, ତାଙ୍କୁ ରାଜ୍ୟସ୍ତରୀୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇପାରି ନାହିଁ । ଯଦିଓ ଆମର ଗୋଟିଏ ସଂସ୍କୃତି ବିଭାଗ ଅଛି । ମାନବ ସମ୍ବଳ ବିକାଶ ଓ ତାହାର ମୂଲ୍ୟାୟନ ଯଦି ଏହିପରି ଭାବରେ ହୁଏ, ତେବେ ଆମର ସ୍ୱାଭିମାନ ଶୀଘ୍ର ଲୋପ ପାଇଯିବାର ସନ୍ଦେହ ଜାତ ହେବା ଅସ୍ୱାଭାବିକ ନୁହେଁ । ଗତ ଦଶ ବର୍ଷର ସର୍ବଭାରତୀୟ ପରୀକ୍ଷାରେ ସଫଳ ଓଡ଼ିଆ ପ୍ରତିଯୋଗୀମାନଙ୍କର ସଂଖ୍ୟା କ୍ରମାଗତ ଭାବରେ ହ୍ରାସ ପାଉଥିବା ସଂଖ୍ୟା ଏହାର ପ୍ରମାଣ ।''

ଓଡ଼ିଆ ଜାତିର ସ୍ୱାଭିମାନ ସମ୍ପର୍କରେ ପ୍ରଫେସର ଦାସଙ୍କର ଉଦ୍‌ବେଗ, ପ୍ରତିଭାର ପୂଜା ପାଇଁ ତାଙ୍କର ଆଗ୍ରହ, ବ୍ୟକ୍ତିଗତ ଦୂରବସ୍ଥାକୁ ଭୁଲି ଜାତିର ଗୌରବକୁ ଗୁରୁତ୍ୱ ଦେବାର ମହାନୁଭବତା, ଯେ କୌଣସି ବୌଦ୍ଧିକ ତଥା ସାଧୁ ଉଦ୍ୟମରେ ତାଙ୍କର ଅକୁଣ୍ଠ ଯୋଗଦାନ କେବଳ ଜଣେ ମହାତ୍ମା ତଥା ମହାମାନବଙ୍କଠାରୁ ଆଶା କରାଯାଏ ! ତାଙ୍କର ଅସୀମ ଅକୁତୋଭୟ ବିଚକ୍ଷଣ ବିଦ୍‌ବତ୍ତା ଓ ଅସାଧାରଣ ବାଗ୍ମୀତା ଚିରସ୍ମରଣୀୟ ହୋଇ ରହିବ ।

ଅବସରପ୍ରାପ୍ତ ପ୍ରଫେସର
୨୯୩୫, ଗୌରୀନଗର
ଭୁବନେଶ୍ୱର-୨



# ସ୍ମୃତିରୁ କିଛି...

**ହରିହର ରଥ**

ପ୍ରଫେସର ବିଧୁଭୂଷଣ ଦାସଙ୍କ ବିୟୋଗରେ ଓଡ଼ିଶା ଏକ ଯଶସ୍ୱୀ ଶିକ୍ଷାବିତ୍‌ଙ୍କୁ ହରାଇଲା । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ଓଡ଼ିଶାରେ ଇଂରାଜୀ ଶିକ୍ଷାର ପୁରୋଧା ତଥା ନୂତନ ଶିକ୍ଷାନୀତିର ଏକ ବଳିଷ୍ଠ ପ୍ରବକ୍ତା ଥିଲେ ।

ରାୟବାହାଦୂର ଦୁର୍ଗାଚରଣ ଦାସ ଓ କବୟିତ୍ରୀ ନିର୍ମଳା ଦେବୀଙ୍କ ଜ୍ୟେଷ୍ଠ ପୁତ୍ର ଭାବେ ସୁବିଦିତ ବିଧୁଭୂଷଣ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସ୍ନାତକୋତ୍ତର ପରୀକ୍ଷାରେ ୧୯୪୪ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ଉକ୍ତ ବର୍ଷ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ପରବର୍ତ୍ତୀ ସମୟରେ ଇଂଲଣ୍ଡର ଅକ୍‌ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ବି.ଲିଟ୍. ଏବଂ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏ.ଏମ୍. ଉପାଧି ଲାଭ କରିଥିଲେ । ୧୯୫୨ ମସିହାରେ ସେ ରେଭେନ୍ସା ମହାବିଦ୍ୟାଳୟର ସୋନପୁର ଚେୟାର ଅଳଂକୃତ କରି ପ୍ରଫେସର ଓ ଇଂରାଜୀ ବିଭାଗର ମୁଖ୍ୟ ପଦବୀରେ ଅଧିଷ୍ଠିତ ହୋଇଥିଲେ । ଉକ୍ତ ବର୍ଷ ମୁଁ ଇଂରାଜୀ ସମ୍ମାନ ଶ୍ରେଣୀର ଛାତ୍ରଭାବେ ପ୍ରଫେସର ଦାସଙ୍କ ସଂସ୍ପର୍ଶରେ ଆସିଲି । ସେ ଠିକ୍ ସମୟରେ ଶ୍ରେଣୀଗୃହକୁ ଆସୁଥିଲେ । ପ୍ରତ୍ୟେକ ବିଷୟକୁ ସାବଲୀଳ ଭାବରେ ବୁଝାଇବାରେ ସେ ଥିଲେ ସିଦ୍ଧହସ୍ତ । ପଢ଼ାଇବାର ଶୈଳୀରେ ସେ ନୂତନ ପଦ୍ଧତିର ଉଦ୍‌ଗାତା ଭାବରେ ସୁପରିଚିତ । ନୂତନ ସମାଲୋଚନା ମାଧ୍ୟମରେ ସାହିତ୍ୟର ବିଶ୍ଳେଷଣ ଥିଲା ତାଙ୍କର ଅତିପ୍ରିୟ । ସେ ଇତିହାସ, ରାଜନୀତି, ଦର୍ଶନ, ମନସ୍ତତ୍ତ୍ୱ, ବିଜ୍ଞାନ, କଳା, ସଂସ୍କୃତି ତଥା ସଙ୍ଗୀତରେ ଦେଖାଦେଇଥିବା ନୂତନ ଦୃଷ୍ଟିଭଙ୍ଗୀର ଉଦାହରଣ ମାଧ୍ୟମରେ ସାହିତ୍ୟର ଦିଗ୍‌ବଳୟକୁ ବ୍ୟାପକ କରି ପାରୁଥିଲେ ।

୧୯୫୮-୫୯ ମସିହାରେ ମୁଁ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦାନ କଲି । ସେତେବେଳେ ପ୍ରଫେସର ଦାସ ସେଠାରେ ନଥିଲେ । ଡେପୁଟେସନ୍‌ରେ କାଠମାଣ୍ଡୁସ୍ଥିତ ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦବୀରେ ଅଧିଷ୍ଠିତ ହୋଇ କାର୍ଯ୍ୟନିର୍ବାହ କରୁଥିଲେ ଏବଂ ପରେ ରାଞ୍ଚି ମହାବିଦ୍ୟାଳୟରେ ଅଧକ୍ଷ ଭାବରେ ଯୋଗ ଦେଇ ନିଜର ଶାସନ ଦକ୍ଷତାର ଦୃଢ଼ ପରିଚୟ ପ୍ରଦାନ କରିଥିଲେ ।

ଡେପୁଟେସନ୍‌ରୁ ପ୍ରତ୍ୟାବର୍ତ୍ତନ କରି ୧୯୬୮ ଜୁନ୍ ମାସରେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ ଏବଂ ପରେ ସେ ଓଡ଼ିଶା ଉଚ୍ଚଶିକ୍ଷା ବିଭାଗରେ ନିର୍ଦ୍ଦେଶକ ପଦବୀରେ ଦୀର୍ଘ ଏଗାରବର୍ଷ କାଳ କାର୍ଯ୍ୟ ନିର୍ବାହ କରିଥିଲେ । ଉକ୍ତ ପଦବୀରେ ସେ ଥିଲେ ବାଦ୍‌ଶାହ, କାରଣ ଦୀର୍ଘ ସମୟ ଧରି ସେ ଶିକ୍ଷାର ତିନୋଟି ବିଭାଗ (Primary, Secondary ଓ Higher Education) କୁ ଗୋଟିଏ କଲମ ମୁନରେ ସୁଚାରୁରୂପେ ଶାସନ କରିଯାଇଛନ୍ତି । ଶିକ୍ଷାନୀତିରେ ସେ ଗୁଡ଼ିଏ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । Proctorial System, Lesson Plan and Lesson Notes, Spoken English Test, Internal Examination System, Semester System ଇତ୍ୟାଦିର ପ୍ରବର୍ତ୍ତନ ଏହାର ଅଂଶ ବିଶେଷ । ଏ ସବୁ ଆଦର୍ଶସ୍ଥାନୀୟ ଶିକ୍ଷାନୀତି ବା ପଦ୍ଧତିକୁ କାଳକ୍ରମେ ଶିକ୍ଷାବିଭାଗର ତଥା ବିଶ୍ୱବିଦ୍ୟାଳୟର ଟହଲିଆ ଶାସକମାନେ ବାତିଲ୍ କରିଦେଇଛନ୍ତି । ସେ ଭିତରୁ ଯେଉଁ କେତୋଟି ରହିଛି, ତା' କେବଳ କାଗଜ କଲମରେ ।

ସର୍ବ ଭାରତୀୟ ଇଂରାଜୀ ଶିକ୍ଷା ସଂଘର ଭୁବନେଶ୍ୱର ଅଧିବେଶନରେ ସେ ସଭାପତି ଆସନ ଅଳଂକୃତ କରି ''ଆଧୁନିକ ସ୍ୱେଚ୍ଛାଚାରୀ ସମାଜ'' ( Modern Permissive Society) ଉପରେ ଯେଉଁ ଅଭିଭାଷଣ ଦେଇଥିଲେ ତାହା ଉଚ୍ଚ ପ୍ରଶଂସିତ ହୋଇଥିଲା । ସମୁଦ୍ରର ଉତ୍ତାଳ ତରଙ୍ଗ ପରି ଶବ୍ଦସନ୍ନିବେଶିତ କାବ୍ୟର ପ୍ରବାହ ଓ ଲୟ ସହିତ ସର୍ବାଧୁନିକ ତାତ୍ତ୍ୱିକ ଆଲୋଚନା ବରିଷ୍ଠ ପ୍ରଫେସରମାନଙ୍କୁ ଚକିତ କରିଥିଲା ।

ପ୍ରଫେସର ବିଧୁଭୂଷଣ ଦାସଙ୍କ ପତ୍ନୀ ପ୍ରଫେସର ପ୍ରଭାତ ନଳିନୀ ଦାସ ମୋର ପି.ଏଚ.ଡି. ନିବନ୍ଧର ପରି ଦିଗ୍‌ଦର୍ଶକ ଥିବା ଅବସ୍ଥାରେ ମୁଁ ସାର୍‌ଙ୍କ ସହିତ ଘନିଷ୍ଠତା ସ୍ଥାପନ କରିପାରିଥିଲି । ସେ ସବୁବେଳେ କହୁଥିଲେ ଯେ ଭାରତବର୍ଷର ଭବିଷ୍ୟତ କର୍ଣ୍ଣଧାରମାନଙ୍କୁ ଗଢ଼ିବାର ଦାୟିତ୍ୱ ଶିକ୍ଷକ ସମାଜର । ସେଥିପାଇଁ ଶିକ୍ଷକ ମାତ୍ରେଇ ଉଚ୍ଚ ଆଦର୍ଶସମ୍ପନ୍ନ ହେବା ଏକାନ୍ତ ବିଧେୟ ।

ପରିଶେଷରେ ସେହି ଜ୍ଞାନଦୀପ୍ତ, ଅମ୍ଳାନ ପ୍ରତିଭାଧର ମୋର ଗୁରୁ ବିଧୁଭୂଷଣଙ୍କ ପାଦବନ୍ଦନା କରିବା ସ୍ମୃତିଚାରଣର ଶେଷ ପର୍ଯ୍ୟାୟ ବୋଲି ମୁଁ ମନେ କରେ : 'ବନ୍ଦଉଁ ଗୁରୁପଦ ପଦୁମ୍ ପରାଗା /ସୁରୁଚି ସୁବାସ ସରସ ଅନୁରାଗା' ।

ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର
ପୁରୁଣା ସହର
କେନ୍ଦୁଝର-୭୫୮୦୦୨



# ଶ୍ରଦ୍ଧାଞ୍ଜଳି

*ସୁଷମା ଚେଞ୍ଚ୍*

ମୋର ପରମ ପୂଜ୍ୟ ଗୁରୁ ପ୍ରଫେସର ✓ ବିଧୁଭୂଷଣ ଦାସଙ୍କ ପ୍ରତି ମୋର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛି ।

ପ୍ରଫେସର ଦାସ ଥିଲେ ଜଣେ ଅସମ୍ଭବ ପ୍ରତିଭାର ଅଧିକାରୀ । ତାଙ୍କର ତୁଳନା ସେ ନିଜେ । ଓଡ଼ିଶାର ଉଚ୍ଚଶିକ୍ଷା କ୍ଷେତ୍ରରେ ତାଙ୍କର ଅନେକ ଅବଦାନ ରହିଛି । ଯଦିଓ ଶିକ୍ଷା ବିଭାଗରେ ନୂତନ ଦିଗ୍‌ଦର୍ଶନ ସହିତ ସେ ଆମୂଳଚୂଳ ପରିବର୍ତ୍ତନ କରିବା ପାଇଁ ଚାହିଁଥିଲେ, କିନ୍ତୁ ତାଙ୍କର ଅନେକ ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରି ନଥିଲା । ହୁଏତ ତାଙ୍କର ଅଭିନବ ଦୃଷ୍ଟିକୋଣ ଓ ଦୂରଦୃଷ୍ଟିକୁ ଠିକ୍ ଭାବରେ ବୁଝିବାକୁ ବିଶେଷ ଚେଷ୍ଟା କରାଯାଇ ନଥିଲା । କାରଣ ସାର୍ ଭବିଷ୍ୟତକୁ ଆଖିରେ ରଖି ଅନେକ ନୂଆ କଥା କରିବାକୁ ଆଗ୍ରହୀ ଥିଲେ । ବ୍ୟକ୍ତିଗତ ଭାବରେ ମୁଁ ସାର୍‌ଙ୍କର ସଂସ୍ପର୍ଶରେ ଆସି ଅନେକ କଥା ଶିଖି ପାରିଛି ଓ ତାଙ୍କର ବିରାଟ ବ୍ୟକ୍ତିତ୍ୱକୁ ବୁଝିବାକୁ ଚେଷ୍ଟା କରିଛି । ଅସୀମ ଜ୍ଞାନର ଅଧିକାରୀ ଓ ଜଣେ ମହାନ୍ ଗୁଣିବ୍ୟକ୍ତିଙ୍କୁ ଓଡ଼ିଶା ଯେ ଚିରଦିନ ପାଇଁ ହରାଇଲା, ଏଥିରେ କୌଣସି ସନ୍ଦେହ ନାହିଁ । ସେ ଅଭାବ ପୂରଣ ହେବ କି ନାହିଁ, କିଏ କହିବ ? ଓଡ଼ିଶାରେ ଆଉ ଜଣେ ବିଧୁଭୂଷଣ ଦାସ ଜନ୍ମ ହେବେ ବୋଲି ମୋର ବିଶ୍ୱାସ ହେଉନାହିଁ ।

'ସାର୍' ଥିଲେ ମୋ ପାଇଁ ଏକ ପ୍ରେରଣାର ଉତ୍ସ । ପଥ ପ୍ରଦର୍ଶକ, ଅଭିଭାବକ, ଗୁରୁ ଓ ଉପଦେଷ୍ଟା । ତାଙ୍କ ସହିତ ମୋର କେବଳ ଗୁରୁ- ଶିଷ୍ୟ ସମ୍ପର୍କ ନଥିଲା କାରଣ ତାଙ୍କ ପରିବାର ସହିତ ଆମ ପରିବାରର ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କୁ ମୁଁ ପିଲାଦିନୁ ଦେଖି ଆସିଛି । ରେଭେନ୍ସା କଲେଜ୍‌ରେ ଛାତ୍ରୀ ଥିବା ଅବସରରେ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ବିଷୟରେ କିଛି କିଛି ଜାଣିବାର ସୁଯୋଗ ପାଇଥିଲି । ଅବଶ୍ୟ ସେତେବେଳେ ତାଙ୍କୁ ବୁଝିବାର ଶକ୍ତି ମୋର କେତେ ବା ଥିଲା  ମୋର କଳା ପ୍ରତି ଆଗ୍ରହ ଦେଖି ସାର୍ ମତେ ପ୍ରଥମରୁ ହିଁ ନୃତ୍ୟ ଓ ଅଭିନୟ କରିବା ଦିଗରେ ଅନେକ ପରିମାଣରେ ଉତ୍ସାହିତ କରିଛନ୍ତି । କଲେଜ୍ ଡ୍ରାମାରେ ଅଭିନୟ କରିବା, ଓଡ଼ିଶୀ ନୃତ୍ୟ ଓଡ଼ିଶାରେ ଓ ଓଡ଼ିଶା ବାହାରେ ପ୍ରଦର୍ଶନ କରିବା ପାଇଁ ସାର୍ ମତେ ସବୁବେଳେ ପ୍ରେରଣା ଦେଇଛନ୍ତି । ମୋ ଭିତରେ ଥିବା ସାମାନ୍ୟ ପ୍ରତିଭାକୁ ବିକାଶ କରିବା ପାଇଁ ସାର୍ ତ

ମତେ ଉତ୍ସାହିତ କରିଛନ୍ତି । ୧୯୫୪ ମସିହାରେ ମୁଁ ଯେତେବେଳେ ଆଇ.ଏ. ପଢ଼ିବା ପାଇଁ ରେଭେନ୍ସା କଲେଜ୍‌ରେ ନାମ ଲେଖାଇଲି, ସେତେବେଳେ ଝିଅଙ୍କ ସଂଖ୍ୟା ଖୁବ୍ କମ୍ ଥିଲା ଓ ସେମାନେ ନାଚିବା, ଅଭିନୟ କରିବା ବା ଖେଳାଖେଳି କରିବା କଥା ଏତେ ପ୍ରଚଳିତ ନଥିଲା । କହିବାକୁ ଗଲେ କେହି ମଧ୍ୟ ସେ ଦିଗରେ ଝିଅମାନଙ୍କୁ ବିଶେଷ ଉତ୍ସାହିତ କରୁନଥିଲେ । କିନ୍ତୁ ସାର୍ ଥିଲେ ମୋ ପାଇଁ ପଥପ୍ରଦର୍ଶକ । ତାଙ୍କରି ଉତ୍ସାହ ଓ ଉପଦେଶ ମୋ ପାଇଁ ଆଣି ଦେଇଥିଲା ନୂଆ ଅନୁଭୂତି । ଅବଶ୍ୟ ଆମ ଘରେ ମୋ ବାପା,ବୋଉ ଓ ମୋ ବଡ ଭଉଣୀ ୰ ନୀଳିମା ମିଶ୍ର ଆମ ସମସ୍ତଙ୍କୁ ନୃତ୍ୟ, ଗୀତ, ଅଭିନୟ ଓ ଖେଳାଖେଳି କରିବା ପାଇଁ ଯଥେଷ୍ଟ ସୁଯୋଗ ଓ ସୁବିଧା ଯୋଗାଇ ଦେଉଥିଲେ । ସେଥିପାଇଁ ମୁଁ ମୋ ବାପା, ବୋଉ, ନାନୀ ଓ ସର୍ବୋପରି ସାର୍‌ଙ୍କ ପ୍ରତି ମୋର ଅନ୍ତରର କୃତଜ୍ଞତା ଜଣାଉଛି । ରେଭେନ୍ସା କଲେଜ୍‌ରେ ପ୍ରଥମ କରି ପୃଥିବୀ ପ୍ରସିଦ୍ଧ ନାଟ୍ୟକାରମାନଙ୍କ ନାଟକର ଅନୁବାଦ କରି ସାର୍ ହିଁ ଆରମ୍ଭ କରିଥିଲେ ଏକ ନୂଆ ପ୍ରଥା । The Weavers, Cherry Orchard, Diary of a Scoundrel, Strife ଇତ୍ୟାଦି ଅନେକ ନାଟକ ମଞ୍ଚସ୍ଥ ହୋଇଥିଲା । ୰କାହ୍ନୁ ଚରଣଙ୍କ ଶାସ୍ତି ଓ ଅନ୍ୟାନ୍ୟ ଅନେକ ଡ୍ରାମାରେ ମୁଁ ଅଭିନୟ କରିଥିଲି ଓ ଶ୍ରେଷ୍ଠ ଅଭିନେତ୍ରୀର ମର୍ଯ୍ୟାଦା ଲାଭ କରିଥିଲି । ଏସବୁ ସମ୍ଭବ ହେଇଥିଲା ମୋର ଗୁରୁଙ୍କ ଆଶୀର୍ବାଦରୁ ।

ସାର୍ ଯେ କେବଳ ଜଣେ କଳା ଉପାସକ ଥିଲେ, ତା ନୁହେଁ, ସେ ଥିଲେ ଜଣେ ଅସାଧାରଣ ବ୍ୟକ୍ତି, ଜଣେ ଉଚ୍ଚକୋଟିର ଶିକ୍ଷକ ଓ ଜଣେ ଛାତ୍ରବତ୍ସଳ ଗୁରୁ । ଜଣେ ଆଦର୍ଶ ଶିକ୍ଷକ ଯିଏ କି ସାରା ଜୀବନ ଜ୍ଞାନ ଅର୍ଜନ କରିବା ପାଇଁ ଲାଗିଥିଲେ ଓ ତାଙ୍କ ସଂସ୍ପର୍ଶରେ ଯୋଉମାନେ ଆସିଛନ୍ତି, ତାଙ୍କୁ ସେଇ ଦିଗରେ ବ୍ରତୀ ହେବା ପାଇଁ କହିଆସୁଥିଲେ । ଜଣେ ଶିକ୍ଷକ ବା ଅଧ୍ୟାପକର ଆଚରଣ ବିଧି କ'ଣ ହେବା ଦରକାର ଓ କିପରି ସାଧନା କଲେ ଜଣେ 'ଗୁରୁ' ପଦବାଚ୍ୟ ହେଇପାରିବ, ଏ କଥା ସେ ସବୁବେଳେ କହୁଥିଲେ । ଶେଷ ପର୍ଯ୍ୟନ୍ତ ସେ ପ୍ରକୃତ 'ଗୁରୁ'ର ମର୍ଯ୍ୟାଦା ଓ ସମ୍ମାନକୁ ବଜାୟ ରଖିଥିଲେ । ସେ ଥିଲେ ଭୀଷ୍ମ ପିତାମହ ଯିଏ କି ତାଙ୍କର ନିଜର ଆଦର୍ଶ ଓ ନୀତିରେ ଥିଲେ ଅଟଳ । ତାଙ୍କ ଆଦର୍ଶ କିଏ ଗ୍ରହଣ କରୁ ବା ନକରୁ, ସେ ତାଙ୍କ କର୍ତ୍ତବ୍ୟ କରିଚାଲିଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବିନା ଦ୍ୱିଧାରେ ବାଣ୍ଟି ଚାଲିଥିଲେ ତାଙ୍କ ଭିତରର ମହତ୍ ଗୁଣଗୁଡିକୁ । ତାଙ୍କ ଛାତ୍ରଛାତ୍ରୀମାନଙ୍କୁ ସେ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥିଲେ । ବିଶେଷ କରି ମୁଁ ଯେତେବେଳେ କୌଣସି ସମସ୍ୟାର ସମ୍ମୁଖୀନ ହୋଇ ସାର୍‌ଙ୍କ ପାଖରେ ପହଞ୍ଚେ, ସେ ସଙ୍ଗେ ସଙ୍ଗେ ସମାଧାନର ବାଟ ବତେଇ ଦିଅନ୍ତି । ସବୁଠାରୁ ବଡ କଥା ହେଲା, ସାର୍ ମତେ ନିର୍ଭୀକ ହେବାକୁ ଶିଖେଇଛନ୍ତି । ନିଜର ମତାମତ ଦେବାବେଳେ ସରକାରୀ ସ୍ତରରେ ହେଉ, ବା ଅନ୍ୟ

ଯେ କୌଣସି ସ୍ତରରେ ହେଉ, ସାର୍ ମତେ ସବୁବେଳେ ସାହସର ସହିତ ସବୁ ସମସ୍ୟାର ମୁକାବିଲା କରିବା ପାଇଁ ଶିଖେଇଥିଲେ ଓ ସବୁବେଳେ ନିର୍ଭୀକ ଭାବରେ ନିଜର ମତବ୍ୟକ୍ତ କରିବା ପାଇଁ ଉତ୍ସାହିତ କରୁଥିଲେ । ଅନେକ କଥା ଚାକିରୀ କଲାବେଳେ ମୁଁ ସାର୍‌ଙ୍କ ଠାରୁ ଶିଖିଛି ସାର୍‌ଙ୍କର ମୋ ଉପରେ ଥିଲା ଅସମ୍ଭବ ବିଶ୍ୱାସ ଓ ସେ ମୋର କାର୍ଯ୍ୟକଳାପରେ ଭାରି ଖୁସି ହେଉଥିଲେ । ସବୁ ବାଧବିଘ୍ନକୁ ଏଡେଇ ଠିକ୍ ବାଟରେ ଚାଲିବାକୁ ସାର୍ ସବୁବେଳେ ଉପଦେଶ ଦେଉଥିଲେ । ମୁଁ ମୋର ଚାକିରୀ କାଳ ଭିତରେ ଯେଉଁସବୁ କଲେଜ୍‌ମାନଙ୍କରେ ସାଂସ୍କୃତିକ କାର୍ଯ୍ୟକ୍ରମ କରିଥିଲି, ପ୍ରତ୍ୟେକ କଲେଜକୁ ସାର୍‌ଙ୍କୁ ନିମନ୍ତ୍ରଣ କରି ନେଇଥିଲି । ମୋର ସୌଭାଗ୍ୟ ଯେ ସାର୍ ମୋର ଅନୁରୋଧ ରଖି ସବୁଠିକି ଯାଇଥିଲେ, କାରଣ ସେ ତାଙ୍କ ଛାତ୍ରଛାତ୍ରୀଙ୍କୁ ଖୁବ୍ ଭଲ ପାଉଥିଲେ । ଆମ ପାଇଁ ସେ ସବୁବେଳେ ଚିନ୍ତା କରୁଥିଲେ । ଯଦି କେହି ତାଙ୍କୁ ଦେଖାକରି କହନ୍ତି ଯେ 'ସାର୍, ମୁଁ ଆପଣଙ୍କର ଜଣେ ପୁରୁଣା ଛାତ୍ର ବା ଛାତ୍ରୀ', ସାର୍ ଅତି ଆନନ୍ଦିତ ହୋଇଯାଉଥିଲେ । ସେ ପ୍ରାୟ ଅଧିକାଂଶ ଛାତ୍ରଙ୍କର ନାଁ ବି ମନେ ରଖୁଥିଲେ । ସେ ଗୁରୁଶିଷ୍ୟ ସମ୍ପର୍କ ଆଉ କାହିଁ ? ଆମେ ସାର୍‌ମାନଙ୍କୁ ପ୍ରକୃତରେ 'ଗୁରୁ' ର ଆସନ ଦେଇଥିଲୁ । ସେତେବେଳର ଅଧ୍ୟାପକ ବା ଶିକ୍ଷକମାନଙ୍କର ମଧ୍ୟ ଶିକ୍ଷା, ନିଷ୍ଠା, ନୈତିକତା, କାର୍ଯ୍ୟଦକ୍ଷତା, ସମୟାନୁବର୍ତ୍ତିତା ତଥା ଜ୍ଞାନ ଆହରଣ କରିବାର ଅଦମ୍ୟ ଉତ୍ସାହ ଆଜି ହୁଏତ ଆଉ ନାହିଁ କହିଲେ ଭୁଲ ହେବ ନାହିଁ । ସେମାନଙ୍କୁ ଦେଖିଲା ମାତ୍ରେ ସ୍ୱତଃ ପ୍ରଣାମ କରିବାକୁ ମନ ହେଇଯାଏ । ଆମେ ସବୁ ସେଇ ଭଳି ଅଧ୍ୟାପକ ବା ଶିକ୍ଷକମାନଙ୍କ ତୁଙ୍ଗ ବ୍ୟକ୍ତିତ୍ୱ ଓ ଆଦର୍ଶ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବାକୁ ଚେଷ୍ଟା କରୁଥିଲୁ । ସେମାନଙ୍କ ପ୍ରତି ଆମର ଭୟ, ସମ୍ମାନ, ଶ୍ରଦ୍ଧା, ଭକ୍ତି ସବୁକିଛି ରହିଥିଲା । ସାର୍‌ଥିଲେ ଏଇଭଳି ଜଣେ ଅନନ୍ୟ ବ୍ୟକ୍ତି ।

ମୋର ମନେ ଅଛି- ଯେତେବେଳେ ମୁଁ ସାଇକୋଲଜି ଅନର୍ସ ନେଇ ବି.ଏ. ପାସ୍ କଲି, ସାର୍ ମତେ ଇଂରାଜୀରେ ଏମ୍.ଏ. କରିବା ପାଇଁ ବାଧ କରିଥିଲେ । ଯଦିଓ ମୋର ଭୟଥିଲା ଯେ ଇଂରାଜୀ ଅନର୍ସ ନଥାଇ ଏମ୍.ଏ କରି ପାରିବି ନାହିଁ, ତଥାପି ସାର୍‌ଙ୍କର ଆଶୀର୍ବାଦ, ପ୍ରେରଣା ମତେ ଯଥେଷ୍ଟ ସାହସ ଦେଇଥିଲା । ସୌଭାଗ୍ୟବଶତଃ ମୁଁ ପରବର୍ତ୍ତୀ କାଳରେ ସାର୍‌ଙ୍କ ତତ୍ତ୍ୱାବଧାନରେ ପି.ଏଚ.ଡି ମଧ୍ୟ କରି ପାରିଲି । ସତ କହିବାକୁ ଗଲେ ମୁଁ ଜଣେ ସାଧାରଣ ଛାତ୍ରୀ ଥିଲି ଆଉ ମୋର ମନ ନାଚ, ଗୀତ, ଅଭିନୟ ଇତ୍ୟାଦି ଆଡେ ବେଶି ଥିଲା । ପି.ଏଚ.ଡି. କରିବା ପୂର୍ବରୁ ଭାବୁଥିଲି- ସାର୍ କଣ ମୋର ସୁପରଭାଇଜର ହେବା ପାଇଁ ସମ୍ମତି ଦେବେ ? ଭୟରେ କିନ୍ତୁ ସାହସ ସଂଚୟ କରି ସାର୍‌ଙ୍କୁ ପଚାରିଲି । ସାର୍‌ଙ୍କର ଦେଇ ଆଶୀର୍ବାଦ

ଓ ସହାନୁଭୂତି ଓ ସମ୍ମତି ମୋ ଜୀବନର ଏକ ବଡ ଅନୁଭୂତି । ତାଙ୍କ ଭଳି ଜଣେ 'ବିଦ୍ୱାନ, ଜ୍ଞାନକୋଷର ଭଣ୍ଡାର' ଅଧ୍ୟାପକଙ୍କ ସମ୍ପର୍କରେ ପ୍ରତ୍ୟକ୍ଷ ଭାବରେ ଆସିବା ଠାରୁ ଆଉ ଅଧିକ ଆନନ୍ଦ କଣ ଥାଇପାରେ ? ମୁଁ ଯଦି ଇଂରାଜୀ ସାହିତ୍ୟକୁ ଭଲ ପାଇଛି, ତେବେ ସେ ହେଲା ସାର୍‌ଙ୍କର ଅବଦାନ । ପି.ଏଚ.ଡି. କଲାବେଳେ ଓଡ଼ିଶା ବାହାରେ ଯେଉଁ ସବୁ ଲାଇବ୍ରେରୀ ଯାଇଛି, ସେଠି ସାର୍‌ଙ୍କ ଛାତ୍ରୀ ବୋଲି ମୁଁ ବି ସମ୍ମାନ ପାଇଛି, ସାହାଯ୍ୟ ପାଇଛି ।

ବ୍ୟକ୍ତିଗତ ଭାବେ ମୁଁ ଅନେକ ବିଷୟରେ ସାର୍‌ଙ୍କ ନିକଟରେ ଋଣୀ । ମୋ ପରିବାରର ସେ ଥିଲେ ମୁରବି, ପିତୃତୁଲ୍ୟ ବ୍ୟକ୍ତି । ମୋ ପିଲାମାନଙ୍କୁ, ମୋ ସ୍ୱାମୀଙ୍କୁ ସେ ଖୁବ୍ ଭଲ ପାଉଥିଲେ । ଆମ ଭିତରେ ପ୍ରତିଭାର ବିକାଶ ପାଇଁ ସେ ସବୁବେଳେ ଉତ୍ସାହିତ କରୁଥିଲେ । ଆମ ଭିତରେ ଆଜି ଯେଉଁ ଶୂନ୍ୟତା ଆସିଛି, ତାହା କେବେ ବି ପୂରଣ ହେବ ନାହିଁ । ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ଦିଗ ମତେ ସବୁଠାରୁ ବେଶୀ ଆକୃଷ୍ଟ କରିଥିଲା । ତା ହେଲା ତାଙ୍କର ଅତି ସାଧାରଣ ଜୀବନଧାରା ଓ ଅସାଧାରଣ ଜ୍ଞାନ ଆହରଣର ପିପାସା  ତଥା ଏକ ଉଚ୍ଚ ଓ ବଳିଷ୍ଠ ଚିନ୍ତାଧାରା । ତାଙ୍କର ଆଧ୍ୟାତ୍ମିକ ଚିନ୍ତାଧାରା ଦ୍ୱାରା ମଧ୍ୟ ମୁଁ ବିଶେଷ ଭାବରେ ପ୍ରଭାବିତ । ସେ ଜଣେ ଅତି ସାଧାସିଧା ମଣିଷଟିଏ ଥିଲେ କିନ୍ତୁ ତାଙ୍କ ଭିତରେ ରହିଥିଲା ଏକ ଅଦ୍ଭୁତ ଚିନ୍ତା ଶୈଳୀ, ଦୂରଦୃଷ୍ଟି । ସେ ବହୁତ ଆଗକୁ ଭାବି ପାରୁଥିଲେ । ସବୁକ୍ଷେତ୍ରରେ ତାଙ୍କର ପ୍ରବେଶ ଥିଲା । ବିଭିନ୍ନ ଦିଗରେ ସେ ଆଲୋଚନା କରିପାରୁଥିଲେ । ଶିକ୍ଷା, ସଂସ୍କୃତି, ରାଜନୀତି, ବିଜ୍ଞାନ, କଳା, ସମାଜ କଲ୍ୟାଣ ଇତ୍ୟାଦି ସବୁ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଥିଲା । ତେଣୁ ଯିଏ ଯେତେବେଳେ ଯୋଉ ବିଷୟରେ ତାଙ୍କର ମନ୍ତବ୍ୟ ଚାହିଁଛି, ସେ ତାକୁ ସେଇ ବିଷୟରେ ବୁଝେଇ ଦେଉଥିଲେ । ଏଭଳି ପ୍ରତିଭାବାନ୍ ବ୍ୟକ୍ତି କେତେଜଣ ଅଛନ୍ତି ?

ସାର୍ ଥିଲେ ଓଡ଼ିଶାର ଶିକ୍ଷା, ସଂସ୍କୃତି, ଓ ସାହିତ୍ୟ କ୍ଷେତ୍ରରେ ଏକ ବିରଳ ବ୍ୟକ୍ତିତ୍ୱ । ତାଙ୍କର ଜୀବନାଦର୍ଶ, ତାଙ୍କର କର୍ମ ନିପୁଣତା, ତାଙ୍କର ଜ୍ଞାନ ପିପାସା, ତାଙ୍କର ନୈତିକବୋଧ, ତାଙ୍କୁ ଓଡ଼ିଶା ତଥା ଓଡ଼ିଶା ବାହାରେ ଏକ ନିଷ୍ଠାପର ଅଧ୍ୟାପକ ରୂପେ ପ୍ରତିଷ୍ଠିତ କରିଥିଲା । ସେ ଶିକ୍ଷା ନିର୍ଦ୍ଦେଶକ ଥିବା ସମୟରେ ଯାହାସବୁ ନୂଆ ପଦ୍ଧତିରେ କରିବାକୁ ଚାହୁଁଥିଲେ, ସେ ସବୁ ଚିନ୍ତା ମଧ୍ୟ ଆଜି କେହି ହୁଏତ କରିପାରିବେ ନାହିଁ । ସାର୍‌ଙ୍କୁ ସେଥିପାଇଁ ଯଥେଷ୍ଟ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡିଛି । ତାଙ୍କର ଚିନ୍ତାଧାରା ଥିଲା ଅଭିନବ, ବାସ୍ତବବାଦୀ ଓ ଏକ ନୂତନ ମୂଲ୍ୟବୋଧ ଉପରେ ଆଧାରିତ । ତେଣୁ ତାଙ୍କ ଦୂରଦୃଷ୍ଟିକୁ ବୁଝିବା ହୁଏତ ଅଧିକାଂଶଙ୍କ ପକ୍ଷେ ସମ୍ଭବ ନଥିଲା । ସେଥିରେ ସେ ବିଚଳିତ ହେଉ ନଥିଲେ କାରଣ ଯେଉଁମାନେ କିଛି ନୂଆ ନୂଆ କଥା କରିବାକୁ ଯା'ନ୍ତି, ତାଙ୍କୁ ସବୁବେଳେ ଅନେକ ସମାଲୋଚନା କରାଯାଏ ।

ସେ ସବୁକୁ ବୁଝିବା ଓ କାର୍ଯ୍ୟକାରୀ କରେଇବା ଭଳି ବିଦ୍ୟା ବୁଦ୍ଧି ମଧ ଦରକାର । କିନ୍ତୁ ଆଜି ନ ହେଲେ ବି କାଲି ତାଙ୍କର ଚିନ୍ତାଧାରାକୁ ବୋଧହୁଏ କେହି ଜଣେ ବୁଝିବ ବୋଲି ଆଶା । ତାଙ୍କର ଅବର୍ତ୍ତମାନରେ ହୁଏତ ତାଙ୍କୁ ସମସ୍ତେ ଖୋଜିବେ, ତାଙ୍କ ଆଦର୍ଶକୁ ବୁଝିବାକୁ ଚେଷ୍ଟା କରିବେ । ସାର୍‌ଙ୍କ ଅନୁପସ୍ଥିତି ବଡ କଷ୍ଟଦାୟକ । ଅନ୍ଧାରରୁ ଆଲୋକକୁ ଯିବା ପାଇଁ, ପଥଭ୍ରଷ୍ଟ ହେଲେ ଠିକ୍ ବାଟରେ ଆଗେଇ ନେବା ପାଇଁ ଯୁଗେ ଯୁଗେ ଏଇଭଳି ଗୁରୁମାନଙ୍କର ଆବଶ୍ୟକତା ରହିଛି ।

ସେଇ ମହାନ ଆତ୍ମାଙ୍କ ଉଦ୍ଦେଶ୍ୟରେ ମୁଁ ମୋର ଅନ୍ତରର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

୪୧, ସହୀଦ ନଗର<br>ଭୁବନେଶ୍ୱର



# ଶିକ୍ଷାଜଗତର ସର୍ବଶ୍ରେଷ୍ଠ ଦିଗ୍‌ଦର୍ଶକ ବିଧୁଭୂଷଣ ଦାସ

*ଦେବେନ୍ଦ୍ର କୁମାର ରାଏ*

ପ୍ରଫେସର ବିଧୁଭୂଷଣ ଦାସଙ୍କର ଅନନ୍ୟ ପ୍ରତିଭାର ବିଭବ ଆମ ଶିକ୍ଷା ପୁର୍ନର୍ବିନ୍ୟାସର ପ୍ରତ୍ୟେକ ସ୍ତରରେ ପ୍ରତିଫଳିତ । ବହୁବର୍ଷ ଧରି ଶିକ୍ଷା ନିର୍ଦ୍ଦେଶକ ଭାବରେ ସେ କେବଳ ଉଚ୍ଚଶିକ୍ଷା ନୁହଁ, ମାଧ୍ୟମିକ ଶିକ୍ଷା, ପ୍ରାଥମିକ ଶିକ୍ଷା, ତାଲିମ ଓ ଶିକ୍ଷକ ଗବେଷଣା କ୍ଷେତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିପାରିଥିଲେ । ଓଡ଼ିଶା ସରକାରଙ୍କର ପ୍ରାଥମିକ ଶିକ୍ଷାନୀତି ପ୍ରଣୟନ କରି ଯେଉଁ ରିପୋର୍ଟଟି ସେ ପ୍ରସ୍ତୁତ କରିଥିଲେ, ତାହା ତାଙ୍କର ବହୁମୁଖୀ ପ୍ରତିଭାର ପରିପ୍ରକାଶ । ବିଶ୍ୱବିଦ୍ୟାଳୟ ପରିଚାଳନା ଓ ଶିକ୍ଷାର ବିକାଶ ପାଇଁ ଭିନ୍ନ ସ୍ତରରେ ସେ ନିଜର ସୁଚିନ୍ତିତ ଯୋଜନା ଓ ଉପଦେଶ ଦେବାରେ ଯତ୍ନଶୀଳ ଥିଲେ ।

ବିଗତ ଅର୍ଦ୍ଧଶତାବ୍ଦୀରେ ପ୍ରଫେସର ଦାସ ଜଣେ ସୁଯୋଗ୍ୟ ଅଧ୍ୟାପକ, ଦକ୍ଷ ପ୍ରଶାସକ ଓ ସାହିତ୍ୟାକାଶର ଦିଗଦର୍ଶକ ଭାବରେ ଚିର ବନ୍ଦନୀୟ । ସେ ଥିଲେ ଶିକ୍ଷକ ସମାଜର ସମ୍ମାନ ଓ ପ୍ରତିଷ୍ଠାର ପ୍ରତୀକ ଓ ମହାନ୍ ଦିଗ୍‌ଦର୍ଶକ । ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଓ ବିଦ୍‌ବତ୍ତା ଛାତ୍ର, ଶିକ୍ଷକ ଓ ବୁଦ୍ଧିଜୀବୀମାନଙ୍କୁ ମୁଗ୍ଧ କରିଥିଲା । ରେଭେନ୍‌ସା ମହାବିଦ୍ୟାଳୟର ଇଂରାଜୀ ବିଭାଗର ଅଧ୍ୟାପକ ଓ ପରବର୍ତ୍ତୀ କାଳରେ ପ୍ରାଧ୍ୟାପକ ଓ ସୋନପୁର ପ୍ରଫେସର ଭାବରେ ତାଙ୍କର ସୁନାମ ଓଡ଼ିଶା ଓ ସାରା ଭାରତରେ ସୁପ୍ରତିଷ୍ଠିତ ହୋଇଥିଲା । ସେ ପ୍ରଫେସର ଓ ଅଧ୍ୟକ୍ଷ ଭାବରେ ଯେଉଁ ମୌଳିକ ଓ ବୈପ୍ଳବାତ୍ମକ ପରିବର୍ତ୍ତନ ଆଣିଥିଲେ, ତାହା ଆମ ଯୁଗରେ ବିରଳ । ବିଶେଷତଃ, ଇଂରାଜୀ ସାହିତ୍ୟ ଓ ଭାଷା ଶିକ୍ଷାଦାନ କ୍ଷେତ୍ରରେ ସେ ଯେଉଁ ପୁନର୍ଜାଗରଣ ଆଣିଥିଲେ, ତାହା ରେଭେନ୍‌ସା ମହାବିଦ୍ୟାଳୟର ସୁନାମ ଓ ପ୍ରତିଷ୍ଠାକୁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ କରି ପାରିଥିଲା । ନୂତନତ୍ୱର ସଂଧାନୀ ଓ ଆଧୁନିକତାର ପ୍ରବର୍ତ୍ତକ ଭାବରେ ପ୍ରଫେସର ଦାସଙ୍କର ନେତୃତ୍ୱ ଇତିହାସର ପୃଷ୍ଠାରେ ଉଲ୍ଲେଖନୀୟ ହୋଇ ରହିବ ।

କେତେକ ମୌଳିକ କାରଣରୁ ତାଙ୍କର ପ୍ରତିଭାର ଉତ୍କର୍ଷ ପ୍ରତିପାଦିତ ହୋଇପାରିଥିଲା । ପ୍ରଫେସର ଦାସ ଲଣ୍ଡନରୁ ଉଚ୍ଚଶିକ୍ଷା ଲାଭ କରି ରେଭେନ୍‌ସା

ମହାବିଦ୍ୟାଳୟରେ ଅଧ୍ୟାପନା କଲାବେଳେ ତାଙ୍କର ଯୁବସୁଲଭ ସ୍ଫୁର୍ତ୍ତି, ମାର୍ଜିତ ପାଶ୍ଚାତ୍ୟ ବେଶଭୂଷା, ଅକ୍‌ସଫୋର୍ଡ ଢ଼ାଞ୍ଚାରେ ଇଂରାଜୀ ଭାଷା ଉଚ୍ଚାରଣର ଉତ୍କର୍ଷ, କବିତା ସମାଲୋଚନାର ନୈପୁଣ୍ୟ ତାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ଓ ଅନନ୍ୟ ପ୍ରତିଭାକୁ ପ୍ରସ୍ଫୁଟିତ କରିଥିଲା । ତାଙ୍କ ବ୍ୟକ୍ତିତ୍ୱର ଅସାଧାରଣ ପ୍ରାଣସ୍ଫୁର୍ତ୍ତୀ ଓ ଗତିଶୀଳତା ରେଭେନ୍‌ସା ମହାବିଦ୍ୟାଳୟର ନୂତନ ପିଢ଼ିର ଆଦର୍ଶ ଥିଲା । ତେଣୁ ପ୍ରାୟ ସବୁ ବିଷୟରେ ଛାତ୍ର, ଅଧ୍ୟାପକ ଓ ପ୍ରଫେସରମାନେ ତାଙ୍କର ବୌଦ୍ଧିକ ନେତୃତ୍ୱକୁ ଉଚ୍ଚ ସମ୍ମାନ ଦେଉଥିଲେ ।

ଜ୍ଞାନ ହିଁ ଶକ୍ତି ଓ ସୃଜନୀଶକ୍ତିର ଆଧାର, ଏହି ଆଦର୍ଶ ତାଙ୍କୁ ସାରା ଜୀବନ ପରିପୂର୍ଣ୍ଣତା ଆଣିଦେଇଥିଲା । ଯାହା ଫଳରେ ସେ ଜୀବନର ଝଡ ଝଞ୍ଜା ମଧ୍ୟରେ ନୂତନ ଆଲୋକର ସନ୍ଧାନୀ ହୋଇପାରିଥିଲେ । ସପ୍ତଦଶ ଶତାବ୍ଦୀର ପ୍ରତିଭାବାନ୍ ଲେଖକ ବେକନ୍ ଓ ଡନ୍‌ଙ୍କର ପାଣ୍ଡିତ୍ୟ ଓ ଜୀବନଦର୍ଶନକୁ ପାଥେୟ କରି ସେ ନିଜର ସାଂସ୍କୃତିକ ଓ ସାହିତ୍ୟିକ ଅଭିରୁଚିକୁ ପରିପୁଷ୍ଟ କରିଥିଲେ । ଆନ୍ତର୍ଜାତିକ ସାହିତ୍ୟ ଓ ଦର୍ଶନର ଅନୁଶୀଳନ କରି ଇଲିଅଟ୍, ମାର୍କସ, ଫ୍ରଏଡ୍, ଫ୍ରେଜର, ରସେଲ୍, ବଦ୍‌ଲେଆର୍, କ୍ୟାମୁ ଓ ହେମିଙ୍ଗୱେ ପ୍ରଭୃତି ପ୍ରତିଭା ସମ୍ପନ୍ନ ଲେଖକଙ୍କର ରଚନାଗୁଡିକୁ ନୂତନ ପିଢ଼ିର ଛାତ୍ରଛାତ୍ରୀ ଓ ଯୁବ ଅଧ୍ୟାପକମାନଙ୍କ ନିକଟରେ ଉପସ୍ଥାପିତ କରିଥିଲେ । ଶ୍ରେଣୀଗୃହରେ ତାଙ୍କର ଓଜସ୍ୱିନୀ ବକ୍ତୃତା, ପାଣ୍ଡିତ୍ୟର ଝଲକ, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷଣ ସବୁ ଏଭଳି ଉଚ୍ଚକୋଟୀର ଓ ପାଣ୍ଡିତ୍ୟପୂର୍ଣ୍ଣ ଥିଲା ଯେ ବେଳେବେଳେ ସାଧାରଣ ଛାତ୍ରମାନଙ୍କର ବୋଧଗମ୍ୟ ହେଉ ନଥିଲା । କିନ୍ତୁ କେଜାଣି କାହିଁକି, କେଉଁ କୁହୁକ ପରଶରେ ସେହି ପାଠ୍ୟଦାନକୁ ସେମାନେ ଭୂୟସୀ ପ୍ରଶଂସା କରୁଥିଲେ । ତାଙ୍କ ଭାଷଣର ଭାବପୂର୍ଣ୍ଣ ବୌଦ୍ଧିକ ଅନୁଭୂତି ଛାତ୍ରମାନଙ୍କର ମନ ଛୁଉଁଥିଲା । ତାଙ୍କର ଛାତ୍ର ହିସାବରେ ଆମ ପିଢ଼ିର ନିବିଡ ଅନୁଭୂତିରୁ ଏହା ସୁସ୍ପଷ୍ଟ । ତାଙ୍କ ଶିକ୍ଷାଦାନର ବୌଦ୍ଧିକ ଆକର୍ଷଣ ଓ ଭାବାବେଗ ହିମାଳୟଠାରୁ ଆହୁରି ଉଚ୍ଚ ଦିଗନ୍ତକୁ ପ୍ରସାରିତ ହୋଇଥିଲା । ତେଣୁ ଛାତ୍ରମାନେ ସେହି ଆଲୋକିତ ଦିଗନ୍ତକୁ ଛୁଇଁବା ପାଇଁ ଆନନ୍ଦରେ ବିଭୋର ହେଉଥିଲେ । ସର୍ବୋପରି ତରୁଣ ଛାତ୍ରମାନେ ସାହିତ୍ୟର ଇନ୍ଦ୍ରଧନୁ ସୃଷ୍ଟି କରିବା ଏକ ଆହ୍ୱାନ ଭାବରେ ଗ୍ରହଣ କରି କ୍ରିୟାଶୀଳ ଓ ଆଲୋଡିତ ହେଉଥିଲେ । ଓଡ଼ିଶାର ଏହି ମହାନ୍ ସଂସ୍କୃତିସଂପନ୍ନ ବିଦ୍ୱାନଙ୍କର ଆଦର୍ଶରେ ନିଜର ଭବିଷ୍ୟତ ଗଢ଼ି ତୋଳିବାର ସ୍ୱପ୍ନ ଦେଖୁଥିଲେ । ବିଧୁଭୂଷଣ ଦାସଙ୍କର ବ୍ୟକ୍ତିତ୍ୱ ଓ ବୌଦ୍ଧିକ ଚେତନାର ନାଟକୀୟତା ଛାତ୍ରମାନଙ୍କୁ ବିସ୍ମୟାଭିଭୂତ କରିଥିଲା । ବିଶେଷତଃ, ସେମାନେ ତାଙ୍କ ପାଖରେ କାର୍ଡିନାଲ୍ ନିୟୁମାନ୍‌ଙ୍କ 'ଜେଣ୍ଟଲମ୍ୟାନ'ଙ୍କର ଶିଷ୍ଟାଚାର ଓ ସଂବେଦନଶୀଳତାର ମାର୍ଜିତ ରୁଚିବୋଧ ଖୋଜି

ପାଉଥିଲେ । ତତ୍ ସଙ୍ଗେ ସଙ୍ଗେ ତାଙ୍କର ପାଠ୍ୟଦାନର ଶୈଳୀ ଓ ସେମିନାର୍‌ଗୁଡ଼ିକର ଆଲୋଚନା ରୋମାଞ୍ଚକର ଓ ହୃଦୟଗ୍ରାହୀ ହୋଇ ପାରିଥିଲା ।

ସେ ଇଂରାଜୀ ସାହିତ୍ୟ ଶିକ୍ଷାଦାନ ସଙ୍ଗେ ସଙ୍ଗେ ସମାଜବିଜ୍ଞାନ, ଦର୍ଶନ, ଓଡ଼ିଆ ସାହିତ୍ୟ, ରାଜନୀତି ବିଜ୍ଞାନ, ବିଜ୍ଞାନ ପ୍ରଭୃତି ବିଭିନ୍ନ ବିଷୟରେ ପାରଦର୍ଶିତା ଲାଭ କରିବା ପାଇଁ ଛାତ୍ରଛାତ୍ରୀମାନଙ୍କୁ ଉତ୍ସାହିତ କରୁଥିଲେ ଓ ପ୍ରେରଣା ଦେଉଥିଲେ । ଫଳରେ ସେ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଯୁବ ଲେଖକ ଗୋଷ୍ଠୀ ସୃଷ୍ଟି କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଆ ଭାଷାର ମନନଶୀଳତା ମାଧ୍ୟମରେ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିବା ପାଇଁ ତାଙ୍କ ଜୀବଦ୍ଦଶାରେ ସେ ଅକ୍ଲାନ୍ତ ପ୍ରଚେଷ୍ଟା କରିଥିଲେ । ଆନ୍ତର୍ଜାତିକ ସାହିତ୍ୟରେ ଶ୍ରେଷ୍ଠ ପୁସ୍ତକଗୁଡ଼ିକ ପାଠ କରି ଓ ବ୍ୟାଖ୍ୟା କରି ସେ ଯୁବଛାତ୍ର ଓ ଅଧ୍ୟାପକମାନଙ୍କୁ ଏକ ପ୍ରଶସ୍ତ ବୌଦ୍ଧିକ ପରିସରକୁ ଟାଣିନେଇ ପାରୁଥିଲେ ଓ ଗୋଷ୍ଠୀ ଚେତନାକୁ ଶାଣିତ କରିପାରୁଥିଲେ । ଓଡ଼ିଶାର ପ୍ରତିଭାବାନ୍ ଛାତ୍ର ଓ ଅଧ୍ୟାପକମାନଙ୍କୁ ଆକୃଷ୍ଟ କରି ସେମାନଙ୍କର ବୌଦ୍ଧିକ ଚେତନାକୁ ଚିରସ୍ରୋତା କରିବା ଓ ସେମାନଙ୍କର ଚିନ୍ତନର ଉତ୍କର୍ଷକୁ ଅଗ୍ରାଧିକାର ଦେବାରେ ତାଙ୍କର ଅସୀମ ଆନନ୍ଦ ଥିଲା । ଏହାହିଁ ତାଙ୍କର ସର୍ବଶ୍ରେଷ୍ଠ କୃତି ।

ଆଧୁନିକତା, ଉତ୍ତର ଆଧୁନିକତା, ନୂତନ ଜୀବନ ଦର୍ଶନ- ଏହିପରି ଯେତେ ନୂତନ ଭାବଧାରାର ସ୍ରୋତ ମାନବଜୀବନର ତାତ୍ତ୍ୱିକ ଦ୍ୟୋତନା ଆଣିଦେଇଛି, ସେ ସବୁର ଅଗ୍ରଣୀ ବ୍ୟଖ୍ୟାକାର ଥିଲେ ପ୍ରଫେସର ଦାସ । ନୂତନ ଲେଖକ ଗୋଷ୍ଠୀ ସୃଷ୍ଟି କରିବା ଓ ପାଠକ ଗୋଷ୍ଠୀ ସମ୍ପ୍ରସାରିତ କରିବାରେ ନିଜକୁ ମଜ୍ଜାଇ ଦେବା ତାଙ୍କର ବ୍ୟକ୍ତିତ୍ୱର ଏକ ବିରଳ ସାଫଲ୍ୟ । ବିଶିଷ୍ଟ ସାହିତ୍ୟିକମାନଙ୍କର ମୂଲ୍ୟାୟନ ମାପକାଠିର ଉତ୍କର୍ଷ ଦର୍ଶାଇବାକୁ ଯାଇ କୁହାଯାଏ, ସେ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ, ସେହି ମର୍ମରେ ବିଧୁଭୂଷଣ ଦାସଙ୍କୁ ମୁଖ୍ୟତଃ ଯୁବ ଲେଖକମାନଙ୍କର ପ୍ରେରଣାର ଉତ୍ସ କୁହାଯାଇପାରେ । ବାସ୍ତବରେ, ସେ ଛାତ୍ରଛାତ୍ରୀମାନଙ୍କୁ ଏକ ନୂତନ ସାହିତ୍ୟର ଝଲକରେ ଉଦ୍‌ଭାସିତ କରିଥିଲେ । ଏହାହିଁ ତାଙ୍କର ମୌଳିକ ଅବଦାନ । ନୂତନ କବିତାର ବାଖ୍ୟା କରି-ଆଧୁନିକ କବିତାଗୁଡ଼ିକର ରସ ଆସ୍ୱାଦନ କ୍ଷେତ୍ରରେ ସେ ବିପ୍ଳବ ଆଣିଥିଲେ । ବହୁବିଧ ସଂସ୍କୃତିର ନିର୍ଯ୍ୟାସରେ ପରିପୁଷ୍ଟ ବୌଦ୍ଧିକ ଚେତନା ତାଙ୍କର ସମାଲୋଚନା ପଦ୍ଧତିକୁ ମାର୍ଜିତ କରିଥିଲା ।

ବାସ୍ତବରେ, ଆଧୁନିକ ଜୀବନର ନୈରାଶ୍ୟରୁ ସୃଷ୍ଟି ହୁଏ ସୃଜନଶୀଳ ସାହିତ୍ୟର ଅସୀମ ଶକ୍ତି । ଇଲିଅଟ୍‌ଙ୍କ କବିତାର ଏହି ସତ୍ୟ ସତେ ଯେମିତି ପ୍ରଫେସର ଦାସଙ୍କ ବ୍ୟାଖ୍ୟାରେ ଆମ ମନକୁ ଟାଣିନେଇଛି । ହଁ, ନୂତନ ସମାଲୋଚନା ମାଧ୍ୟମରେ କବିତାର ପ୍ରତି ବାକ୍ୟ ଓ ଶବ୍ଦକୁ ବ୍ୟାଖ୍ୟା କରି ସେ ସବୁବେଳେ ଉତ୍କର୍ଷର କେନ୍ଦ୍ରବିନ୍ଦୁ ଖୋଜି ନେଉଥିଲେ । ଉଦାହରଣ ସ୍ୱରୂପ, ରେଭେନ୍‌ସା ମହାବିଦ୍ୟାଳୟରେ ନାନା

ବାର୍ଷିକିରେ ମଧ୍ୟରେ ଆଣ୍ଟନ ଚେକ୍‌ଭଙ୍କ The Cherry Orchard ର ଓଡ଼ିଆ ଅନୁବାଦ 'ବଗିଚା' ନାଟ୍ୟ ସଂସଦ ତରଫରୁ ମଞ୍ଚସ୍ଥ କରାଇଥିଲେ । ସେହି ଅନୁବାଦକୁ ସମାଲୋଚକମାନେ ବିଭିନ୍ନ ଭାବେ ବ୍ୟାଖ୍ୟା କରିଥିଲେ । କିନ୍ତୁ ଏହା ଯେ ଏକ ରୁଚିସମ୍ପନ୍ନ ଆନ୍ତର୍ଜାତିକ ନାଟକର ମଞ୍ଚରୂପ, ତାହା ଦର୍ଶକମାନଙ୍କୁ ବିଭୋର କରିଥିଲା । ଏକ ନୂତନ ସାହିତ୍ୟିକ ଆଭିମୁଖ୍ୟର ସ୍ରଷ୍ଟାଭାବେ ବିଧୁଭୂଷଣ ଦାସ ଜନମାନସରେ ସ୍ୱୀକୃତ ହୋଇଥିଲେ ।

ବିଧୁଭୂଷଣ ଦାସ ବହୁ ବର୍ଷଧରି ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ ଥିଲେ ଓ ସ୍ୱଳ୍ପକାଳ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ଦାୟିତ୍ୱ ତୁଲାଇଥିଲେ । ତାଙ୍କର ଦୃଢ଼ ପ୍ରଶାସନିକ ପଦକ୍ଷେପଗୁଡ଼ିକର ସାଫଲ୍ୟ ସୁଦୂରପ୍ରସାରୀ ଥିଲା ଓ ଶିକ୍ଷା ପ୍ରଶାସନର ଆବଶ୍ୟକତା ପ୍ରତିପାଦିତ କରିଥିଲା । ୧୯୯୬ ମସିହାଠାରୁ ଓଡ଼ିଶାରେ ଶିକ୍ଷାବିତ୍‌ମାନଙ୍କୁ ଶିକ୍ଷା ଯୋଜନା ଓ ପ୍ରଶାସନରୁ ଦୂରେଇ ରଖିବାର ଅପଚେଷ୍ଟା ହୁଏତ ଦାସଙ୍କ ସମୟରେ ଘଟି ନଥାନ୍ତା । ଶିକ୍ଷା ପ୍ରଶାସନ ତାଙ୍କ ପାଇଁ ଏକ ବଳିଷ୍ଠ ଆହ୍ୱାନ ଥିଲା । ପ୍ରଥମ କରି, ସେ ସୁନାବେଡାଠାରେ ଅଧ୍ୟକ୍ଷମାନଙ୍କର ସମ୍ମିଳନୀ ଆରମ୍ଭ କରି ଶିକ୍ଷା ବ୍ୟବସ୍ଥାର ଅନୁଶୀଳନ ଓ ଆଲୋଚନା କରି ଉଚ୍ଚଶିକ୍ଷାର ପୁନର୍ବିନ୍ୟାସ କରିଥିଲେ । ସେ ଏକ ଐତିହାସିକ ପଦକ୍ଷେପ ନେଇ ୧୯୭୦ ମସିହାରୁ ଘରୋଇ ମହାବିଦ୍ୟାଳୟଗୁଡ଼ିକୁ ସୁନିୟନ୍ତ୍ରିତ କରିଥିଲେ । ଘରୋଇ ମହାବିଦ୍ୟାଳୟଗୁଡ଼ିକୁ ସରକାରୀ 'ସାର୍କୁଲର୍' ପଠାଇ ଆଇନର ଶାସନ ପ୍ରତିଷ୍ଠା କରିବା, ଯୋଗ୍ୟତା ଭିତ୍ତିରେ ଶିକ୍ଷକ ମନୋନୟନ କରିବା, ସରକାରୀ ବିଦ୍ୟାଳୟର ଅଧ୍ୟକ୍ଷ ପଠାଇ ଅର୍ଥନୈତିକ ଦିଗଟକୁ ସୁସଂଗଠିତ ଓ ନିୟନ୍ତ୍ରିତ କରିବା ପ୍ରଭୃତି ପଦକ୍ଷେପଗୁଡ଼ିକ ସେ ପ୍ରଥମେ ଆରମ୍ଭ କରିଥିଲେ । ସେଥିରେ ତାଙ୍କର ଦୂରଦୃଷ୍ଟି ଓ ନିଷ୍ଠା ପ୍ରକାଶ ପାଇଥିଲା । ଶିକ୍ଷକମାନଙ୍କର ପ୍ରମୋଶନ କ୍ଷେତ୍ରରେ ମଧ୍ୟ ତାଙ୍କର ବିଶେଷ ଭୂମିକା ଥିଲା । ଏ ସମସ୍ତ ତାଙ୍କର ପ୍ରଶାସନିକ ଦୃଢ଼ତାର ଉଲ୍ଲେଖନୀୟ ଅଧ୍ୟାୟ ।

ଜଣେ ସମ୍ବେଦନଶୀଳ ମଣିଷ ଭାବରେ ତାଙ୍କର ଭାବାବେଗ ଓ ସହୃଦୟତା କେବଳ ଖୁବ୍ ନିକଟରୁ ଜାଣି ହେଉଥିଲା । ଏହାର ଗୋଟିଏ ଦୃଷ୍ଟାନ୍ତ ଆମ୍ଭମାନଙ୍କ ମନରେ ଗଭୀର ରେଖାପାତ କରେ । ୧୯୬୦ ମସିହାର କଥା । ପ୍ରଫେସର ଦାସ ନେପାଳର ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥାଆନ୍ତି । ରେଭେନ୍‌ସା ମହାବିଦ୍ୟାଳୟ ଇଂରାଜୀ ବିଭାଗର ବାର୍ଷିକ ଉତ୍ସବରେ ମୁଖ୍ୟଅତିଥି ହେବା ପାଇଁ ତାଙ୍କୁ ସାଦର ନିମନ୍ତ୍ରଣ କରାଗଲା । ସେତେବେଳେ ସେ ଓଡ଼ିଶାକୁ ଆସି ନିଜ ଘରେ ଥାଆନ୍ତି । ଶେଷ ମୁହୂର୍ତ୍ତରେ ସେମିନାର ସେକ୍ରେଟେରୀଙ୍କୁ ଖବର ଆସିଲା । ପ୍ରଫେସର ଦାସ ଯୋଗଦେବେ ନାହିଁ, କାରଣ ତାଙ୍କର କେତେଜଣ ଉପଦେଷ୍ଟା ତାଙ୍କୁ ବାରଣ କରିଥିଲେ । ଜାକଯମକରେ ସମସ୍ତ ଆୟୋଜନ ସରିଥିଲା । ତେଣୁ ସେମିନାର

ସେକ୍ରେଟେରୀ ତା ପୂର୍ବ ସନ୍ଧ୍ୟାରେ ପ୍ରଫେସର ଓବ୍ରାଏନଙ୍କୁ ନେଇ ଦାସଙ୍କ ଘରେ ପହଞ୍ଚିଲେ । ସେହି ସାକ୍ଷାତରେ ଦୁଇବନ୍ଧୁ ଏକ ଅପୂର୍ବ ମିଳନର ଆନନ୍ଦରେ ଅଭିଭୂତ ହୋଇ ପରସ୍ପରକୁ ଆଲିଙ୍ଗନ କଲେ । ତା'ର ପରଦିନ ସେମିନାରରେ ଏକ ମନୋରମ ଉତ୍ସବରେ ପ୍ରଫେସର ଦାସ ଉଦ୍‌ବୋଧନ ଦେଲେ । ସ୍ନେହ, ସୌହାର୍ଦ୍ଦ୍ୟ ଓ ଶ୍ରଦ୍ଧାରେ ସିକ୍ତ ସେହି ସଭାର ତାତ୍ପର୍ଯ୍ୟ ସବୁଦିନ ପାଇଁ ଛାତ୍ର ଓ ଅଧ୍ୟାପକମାନଙ୍କ ମାନସପଟରେ ଲିପିବଦ୍ଧ ହୋଇ ରହିଗଲା । ପରବର୍ତ୍ତୀ ସମୟରେ ଦାସଙ୍କ ସହଧର୍ମୀଣୀ ପ୍ରଫେସର ପ୍ରଭାତନଳିନୀ ଦାସ ଇଂରାଜୀ ବିଭାଗର ମୁଖ୍ୟ ଭାବରେ ଯେଉଁ ନୂତନ ଦିଗନ୍ତ ସୃଷ୍ଟି କରିଥିଲେ, ସେଥିରେ ତାଙ୍କର ସଂଗଠିତ ନେତୃତ୍ୱ ଓ ନିଷ୍ଠା ରହିଥିଲା । ଏଥିପାଇଁ ବିଧୁଭୂଷଣ ଦାସ ଦିଗଦର୍ଶନ ଦେଉଥିଲେ ଓ ପ୍ରେରଣାର ନୂତନ ତରଙ୍ଗ ସୃଷ୍ଟି କରୁଥିଲେ । ସର୍ବୋପରି, ଓଡ଼ିଶାରେ ଇଂରାଜୀ ଶିକ୍ଷାର ଉତ୍କର୍ଷ ସର୍ବଭାରତୀୟ ଓ ଆନ୍ତର୍ଜାତିକ ସ୍ତରର ଏକ ପାଣ୍ଡିତ୍ୟପୂର୍ଣ୍ଣ ପୃଷ୍ଠଭୂମିରେ ସ୍ୱୀକୃତ ହୋଇ ପାରିଥିଲା ।

ନୂତନ ସୃଷ୍ଟିରେ ଆଗେଇଚାଲ, ବୌଦ୍ଧିକ ଚେତନାରେ ସମୃଦ୍ଧ ହୁଅ, ନୂତନ ସାହିତ୍ୟ ସୃଷ୍ଟି କର- ଏହାହିଁ ତାଙ୍କର ଜୀବନବ୍ୟାପୀ ଅବିଶ୍ରାନ୍ତ ପ୍ରଚେଷ୍ଟାର ପ୍ରତିଫଳନ । ଓଡ଼ିଶାର ଅନେକ ପ୍ରତିଷ୍ଠିତ କବି ଓ ଲେଖକ ଦାସଙ୍କ ସାହିତ୍ୟ ସମାଲୋଚନା ଓ ରସାପ୍ଲୁତ ସାହିତ୍ୟ ବିକାଶର ପ୍ରେରଣାରେ ଗଭୀର ଭାବେ ପ୍ରଭାବିତ । ପ୍ରେମକବିତା ଲେଖିବା ବେଳେ ବା ଜୀବନର ତୀବ୍ର ଅନୁଭୂତିକୁ କୁହୁକ ସ୍ପର୍ଶ ଦେଲାବେଳେ ଲେଖକମାନେ ଦାସଙ୍କ ମାର୍ଜିତ ରୁଚିବୋଧ ଓ ଦିଗ୍‌ଦର୍ଶନର କେତୋଟି ଝଲକ ସ୍ୱତଃସ୍ଫୂର୍ତ୍ତଭାବେ ସେମାନଙ୍କର ନୂତନ କବିତାରେ ଉଙ୍କିମାରେ । କେତେକ ହୁଏତ ଏହା ବିଶେଷ ସ୍ୱୀକାର କରନ୍ତି ନାହିଁ, କିନ୍ତୁ ରସଗ୍ରାହୀ ପାଠକ ଏହି ପ୍ରଭାବର ଆଲେଖ୍ୟ ଆବିଷ୍କାର କରି ଅମୃତ ସନ୍ଧାନୀ କବିକୁ କାଳଜୟୀ କରନ୍ତି । ଭାନୁଜୀ ରାଓ ଓ ଗୁରୁପ୍ରସାଦ ମହାନ୍ତିଙ୍କ "ନୂତନ କବିତା" ସେହି ମହାନ୍ ଶିକ୍ଷାବିତ୍‌ଙ୍କର ପ୍ରେରଣାର ପ୍ରତୀକ, ସେହି ବୌଦ୍ଧିକ ପର୍ଯ୍ୟାଲୋଚନାର ପ୍ରତିଧ୍ୱନି ।

ସର୍ବୋପରି, ନୂତନ ବିଶ୍ୱର ଅଭ୍ୟୁଦୟରେ ଓଡ଼ିଶା କିପରି ଯଥାର୍ଥସ୍ଥାନ ଅଧିକାର କରିବ, ସେଥିପାଇଁ ସେ ଯୁବଗୋଷ୍ଠୀକୁ ଆହ୍ୱାନ ଦେଉଥିଲେ ଓ ସେହି ଚେତନାର ସ୍ଫୁରଣ ତାଙ୍କର ଓଜସ୍ୱିନୀ ଭାଷଣର ଉପଜୀବ୍ୟ ଥିଲା । ପ୍ରଫେସର ଦାସଙ୍କର ଅସାଧାରଣ ପାଣ୍ଡିତ୍ୟ ଐତିହାସିକ ଦୃଷ୍ଟିକୋଣରୁ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଆଗାମୀ ଶତାବ୍ଦୀରେ ତାଙ୍କର ବଳିଷ୍ଠ ଚିନ୍ତାଧାରା ଓ ଦିଗ୍‌ଦର୍ଶନରୁ କାଣିଚାଏ ସଂଗ୍ରହ କରିପାରିଲେ ତାଙ୍କର ସ୍ୱପ୍ନର ଆଦର୍ଶ ସମାଜ ପ୍ରତିଷ୍ଠିତ ହୋଇ ପାରିବ ।

ଅବସରପ୍ରାପ୍ତ ଡି.ପି.ଆଇ
ଓଡିଶା



# ମହାନ୍ ଆଚାର୍ଯ୍ୟ ସ୍ମରଣେ

*ଶରତ ଚନ୍ଦ୍ର ପୂଜାରୀ*

ପ୍ରଫେସର ବିଧୁଭୂଷଣ ଦାସ ଚାଲିଗଲେ । ଭୁବନେଶ୍ୱରରେ ରହୁଥିଲେ ମଧ୍ୟ ମୋର ବ୍ୟସ୍ତ ଜୀବନରେ ମୁଁ ତାଙ୍କୁ କ୍ୱଚିତ୍ ଦେଖାକରି ପାରୁଥିଲି । ଏ ସବୁ ସତ୍ତ୍ୱେ ସେ ଥିଲେ ମୋର ପଚାଶବର୍ଷର ଏକମାତ୍ର ସୃଜନଶୀଳତାର ଆଧାର । ପ୍ରେରଣାର ଉତ୍ସ । ସେଥିଲେ ମୋର ପିତୃତୁଲ୍ୟ ।

ଜଣେ ଇଣ୍ଟରମିଡିଏଟ୍ ଛାତ୍ର ଭାବରେ ୧୯୫୨ ମସିହାରେ ମୁଁ ପ୍ରଥମେ ତାଙ୍କୁ ଦେଖିଲି ରେଭେନ୍ସା ମହାବିଦ୍ୟାଳର ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ପଦବୀରେ । ବାହାରୁ ଅତିମାତ୍ରାରେ ଗମ୍ଭୀର କିନ୍ତୁ ଭିତରେ ଆମାୟିକତା, ରସିକତା ଓ ଜ୍ଞାନଭଣ୍ଡାରର ଏକ ଅମୂଲ୍ୟ ଖଣି ଥିଲେ ବିଧୁବାବୁ । ଏକ ସଂଭ୍ରାନ୍ତ ବିରାଟ ପରିବାରର ସେ ଥିଲେ ଜ୍ୟେଷ୍ଠ ଭ୍ରାତା । ତାଙ୍କର କନିଷ୍ଠ ପ୍ରଫେସର ଚଣ୍ଡୀଚରଣ, ପୂର୍ବତନ ମୁଖ୍ୟ ଶାସନ ସଚୀବ ରବିନାରାୟଣ, ଆଇ.ଏ.ଏସ୍, ଅନ୍ନଦା ଚରଣ ଓ ଅନ୍ୟାନ୍ୟ ଭ୍ରାତାମାନଙ୍କ ସହିତ ମୋର ଆତ୍ମିୟତା ଓ ପରିଚୟ ଥିଲା ଛାତ୍ର ଜୀବନରୁ । ମୋର ସ୍ୱର୍ଗତ ପିତା ବିଧୁବାବୁଙ୍କ ସ୍ୱର୍ଗତ ପିତା କଲେକ୍ଟର ଦୁର୍ଗା ଦାସଙ୍କର ଅନୁଜ ସଦୃଶ କନିଷ୍ଠ କର୍ମୀ ଥିଲେ । ତେଣୁ ଆମର ଦୁଇଟି ପରିବାର ତିରିଶ ଦଶକରୁ ପରସ୍ପରକୁ ଜାଣିଥିଲେ ।

ଇଂରାଜୀ ବିଭାଗର ମୁଖ୍ୟ ଥିଲେ ମଧ୍ୟ ରେଭେନ୍ସା ମହାବିଦ୍ୟାଳୟର ପ୍ରାୟ ସମସ୍ତ ଛାତ୍ରଛାତ୍ରୀ ତାଙ୍କୁ ଯଥେଷ୍ଟ ଭୟ ଓ ସମ୍ମାନ ଦେଖାଉଥିଲେ । ମୋ'ପରି ଓଡ଼ିଆ ସମ୍ମାନ ଶ୍ରେଣୀର ଛାତ୍ର ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ପ୍ରଫେସର ଦାସଙ୍କ ନିକଟତମ ହେବା ପଛରେ ଥିଲା ତାଙ୍କର ବ୍ୟକ୍ତିତ୍ୱ । ସର୍ବଦା ସୁଟ୍ ବା ପରିଷ୍କାର ମଠା, ଟସର ଓ ଧଳାକନାର ସଫାରୀ ସୁଟ୍ ପିନ୍ଧୁଥିବା ପ୍ରଫେସର ଦାସଙ୍କ ଉନ୍ନତ କପାଳ ଓ ଧୂଆଁଳିଆ ଚଷମା ଭିତରର ଆଖି ଦୁଇଟିରେ ଥିଲା ଏକ ଅପୂର୍ବ ଦୀପ୍ତି । ଜଣେ ଛାତ୍ରପାଇଁ ସେ ଦୃଷ୍ଟିରେ ଥିଲା ଅନୁସନ୍ଧିତ୍ସା, ପ୍ରଶାସନିକ ବିଶ୍ଳେଷଣ ଓ ପିତୃତୁଲ୍ୟ ଅନୁକମ୍ପା । ପ୍ରଥମରୁ ପ୍ରତ୍ୟେକ ଛାତ୍ର ସହିତ କଥାବାର୍ତ୍ତା କରିବା ବେଳେ ତାଙ୍କର ଅକ୍ସଫୋର୍ଡିୟ ଇଂରାଜୀ ଉଚ୍ଚାରଣ ଆମକୁ ଉତ୍ତର ଦେବା ପାଇଁ ଅପ୍ରସ୍ତୁତ କରି ପକାଉଥିଲା । ପରେ ପରେ ମୁହଁର ସାମାନ୍ୟ ଚାପାହସ ସହିତ ଖାଣ୍ଟି ଓଡ଼ିଆରେ ତାଙ୍କର ବକ୍ରୋକ୍ତି ବେଶ୍ ଆଶ୍ୱାସନା ଦେଉଥିଲା । ଜଣେ ବରିଷ୍ଠ ଅଧ୍ୟାପକ ଭାବରେ

ଭଲ ଛାତ୍ର ମଧ୍ୟରୁ ମଧ୍ୟମ ଓ ଅଧମ ଧରଣର ଛାତ୍ରମାନଙ୍କ ବିଷୟରେ ଖୁବ୍ କମ୍ ସମୟ ମଧ୍ୟରେ ପ୍ରଫେସର ଦାସ ସବୁକିଛି ଅବଗତ ହୋଇପାରୁଥିଲେ । ଇଂରାଜୀରେ କମ୍ ନମ୍ବର ରଖୁଥିଲେ ମଧ୍ୟ ତାଙ୍କର ଦୃଷ୍ଟି ମୋ ଉପରୁ କେବେହେଲେ ଦୂରକୁ ଅପସାରିତ ହୋଇନଥିଲା । କାରଣ ମୋର ଚିତ୍ରକଳା ଓ ଅଭିନୟ ପ୍ରତି ସେ ଆକୃଷ୍ଟ ହୋଇଥିଲେ । ପାଖକୁ ଡାକି, ପିଠି ଥାପୁଡେଇ ତାଙ୍କର ଇଂରାଜୀରେ ଉତ୍ସାହବାଣୀ ମୋର ଏବେ ବି କାନରେ ଗୁଞ୍ଜରିତ ହେଉଛି ।

ଓଥେଲୋ, ହ୍ୟାମଲେଟ୍, ମିଡ୍ ସମର ନାଇଟସ୍ ଡ୍ରିମ୍ ପରି ନାଟକ ତଥା ବର୍ଟ୍ରଣ୍ଡ ରସେଲ୍ ଓ ଟି.ଏସ୍.ଇଲିଅଟଙ୍କ ପରି ଯୁଗଜନ୍ମା ସାହିତ୍ୟିକ କୃତି ମୋ ପରି ଛାତ୍ର ଆଗରେ ପରିବେଷଣ କରିବାରେ ସେ ଥିଲେ ଜଣେ ସିଦ୍ଧହସ୍ତ ଯାଦୁକର । ନାଟକର ପ୍ରତ୍ୟେକ ଚରିତ୍ର, ଦାର୍ଶନିକ ଚିନ୍ତା ଓ କାବ୍ୟିକ ବିଶ୍ଳେଷଣ ସେ ଯେପରି ଭାବରେ ଛାତ୍ରମାନଙ୍କ ଆଗରେ ପରିବେଷଣ କରୁଥିଲେ, ତାହା ଅନ୍ତତଃ ମୋର ଇଂରାଜୀ ସାହିତ୍ୟ ପ୍ରତି ଆକର୍ଷଣ ଓ ଆସକ୍ତି ଜନ୍ମାଇଥିଲା । ତାଙ୍କରି ପ୍ରରୋଚନାରେ କନିକା ଲାଇବ୍ରେରୀର ଇଂରାଜୀ ସାହିତ୍ୟର ବହି ବ୍ୟତୀତ ଇଂରାଜୀରୁ ଅନୁବାଦିତ ଫରାସୀ ସାହିତ୍ୟ, ଇଟାଲୀୟ ସାହିତ୍ୟ, ଜର୍ମାନ ସାହିତ୍ୟ ଓ ଋଷୀୟ ସାହିତ୍ୟ ପ୍ରତି ମୋ'ପରି ଜଣେ ଓଡ଼ିଆ ସାହିତ୍ୟର ଛାତ୍ରକୁ ଆକର୍ଷିତ କରିଥିଲା ।

୧୯୫୩/୫୪ ମସିହାର କଲେଜ ନିର୍ବାଚନରେ ମୁଁ ନାଟ୍ୟ ସଂସଦର ସଂପାଦକ ଭାବରେ ନିର୍ବାଚିତ ହେବା ପରେ ପ୍ରଫେସର ଦାସଙ୍କ ସହିତ ବେଶୀ ଘନିଷ୍ଠ ହେବାକୁ ପଡିଲା । କାରଣ ସେବର୍ଷ ପାଇଁ ପ୍ରଫେସର ଦାସ ଓ ଡକ୍ଟର ଦେବେନ୍ଦ୍ର ମିଶ୍ର ନାଟ୍ୟ ସଂସଦର ଯୁଗ୍ମ ଉପସଭାପତି ଭାବରେ ଦାୟିତ୍ୱଗ୍ରହଣ କରିଥିଲେ । ନିର୍ବାଚନ ଫଳାଫଳ ବାହାରିବା ସଙ୍ଗେ ସଙ୍ଗେ ବିଧୁବାବୁ ନାଟ୍ୟ ସଂସଦର କାର୍ଯ୍ୟକାରୀ ସଭା ଡକାଇ କେତେକ ପ୍ରସ୍ତାବ ଉପସ୍ଥାପନ କଲେ । ଏ ପ୍ରସ୍ତାବଗୁଡିକ ଯେପରି ଆଧୁନିକ ଥିଲା, ସେତିକି ବିପ୍ଳବାତ୍ମକ ମଧ୍ୟ ଥିଲା । ଇଉରୋପୀୟ ଶିଳ୍ପ ବିପ୍ଳବ ପୃଷ୍ଠଭୂମିରେ ମାନବ ସମ୍ବଳ ପ୍ରତି ସାମାଜିକ ଶୋଷଣକୁ ଆଧାର କରି ଜର୍ମାନ ନାଟ୍ୟକାର 'ହଫମ୍ୟାନ'ଙ୍କ ''ଦି ୱିଭର୍ସ'' ନାଟକର ଓଡ଼ିଆ ରୂପାନ୍ତର ପରିବେଷଣ କରିବାକୁ ସେ ଯୋଜନା କଲେ । ଏହାକୁ ଫଳବତୀ କରିବା ପାଇଁ ତାଙ୍କର ଧୈର୍ଯ୍ୟ ଓ ଅନୁଶାସନ ମୋତେ ସମ୍ପୂର୍ଣ୍ଣ ପ୍ରଭାବିତ କରିଥିଲା । ଦୁଇ ମାସର ଅକ୍ଳାନ୍ତ ପରିଶ୍ରମ ଓ ଇଂରାଜୀ ବିଭାଗର ସମସ୍ତ ଅଧ୍ୟାପକମାନଙ୍କ ସହଯୋଗରେ ଏ ନାଟକର ଓଡ଼ିଆ ରୂପାନ୍ତର କରାଯାଇ ରେଭେନ୍ସା କଲେଜ ନାଟ୍ୟ ସଂସଦ ଏହାକୁ ୧୯୫୪ ମସିହାର ଫେବୃଆରୀ ମାସରେ ସଫଳତାର ସହିତ ପରିବେଷଣ କରିଥିଲେ । ସେଇ ବର୍ଷ ପ୍ରଫେସର ଦାସଙ୍କ ପ୍ରରୋଚନାରେ ଆମେ କେତେଜଣ ଛାତ୍ର ସହଯୋଗ କଲୁ । ଇଂଲଣ୍ଡର ପ୍ରଫେସର

ଜେଫ୍ରି ବ୍ୟାଣ୍ଡେଲ୍‌ଙ୍କର ବିଖ୍ୟାତ୍ ''ସେକ୍ସିପିଆରିନା'' ନାଟ୍ୟଦଳଙ୍କୁ-କଟକ ନିମନ୍ତ୍ରଣ ପ୍ରସ୍ତାବରେ ସାତଦିନ ଯାଏ ବାଙ୍କାବଜାର ଗଳିର ଜନତା ଥିଏଟର୍ସ ମଞ୍ଚ ଉପରେ ଏହି ଦଳ ଆସି ବ୍ୟାବସାୟିକ ଢ଼ଙ୍ଗରେ ପରିବେଷଣ କରିଥିଲେ ସେକ୍ସପିଅର ଓ ସ'ଙ୍କର ବିଶ୍ୱବିଖ୍ୟାତ ୭/୮ଟି ନାଟକ । ଏ ସମସ୍ତ କାର୍ଯ୍ୟକ୍ରମ ମଧ୍ୟରେ ସେ ମୋତେ ଶରତ୍‌ରୁ ''ସେକି'' (ସେକ୍ରେଟେରୀ) ଡାକରେ ଭୂଷିତ କରିସାରିଥିଲେ । ବି.ଏ. ପରୀକ୍ଷାପରେ ରେଭେନ୍ସା କଲେଜରୁ ବିଦାୟ ନେବା ବେଳେ ପ୍ରଫେସର ଦାସ ଓ ଡକ୍ଟର ଦେବେନ୍ଦ୍ର ମିଶ୍ର ଇଂଲଣ୍ଡ ଯାଇ ''ରୟାଲ ସ୍କୁଲ୍ ଅଫ ଡ୍ରାମା''ରେ ଅଧ୍ୟୟନ କରିବା ପାଇଁ ମୋତେ ଉତ୍ସାହିତ କରିଥିଲେ । ମୋ ପରି ଛାତ୍ରପାଇଁ ଏ ଉତ୍ସାହ, ପ୍ରୋତ୍ସାହନ ଓ ଆନ୍ତରିକତା, ମୋ ସାରାଜୀବନରେ ଏକ ଅଭୁଲା ପାଥେୟ ହୋଇ ରହିଗଲା ।

ଘଟଣାଚକ୍ରରେ ପ୍ରୟାଗ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକ ହେବାପରେ ମୁଁ ୧୯୬୦ରୁ ୧୯୬୬ ମସିହାଯାଏ ଅଧ୍ୟାପକ ଭାବରେ ଅବସ୍ଥାପିତ ହେଲି ବରଗଡ ପଞ୍ଚାୟତ କଲେଜରେ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବାରୁ ମୋ'ର ତାଙ୍କ ସହିତ କଲେଜ ପରିଚାଳନାଗତ ସମ୍ପର୍କ ଥିଲା । ଶେଷ ବେଳକୁ ସେ କାଠମାଣ୍ଡୁ ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ଅବସ୍ଥାପିତ ହେଲେ । ମୁଁ ବରଗଡ କଲେଜରୁ ବିଦାୟ ନେଇ ଲରମ୍ବା କଲେଜରେ ଅଧ୍ୟକ୍ଷ ଭାବରେ ଯୋଗଦେବା ବେଳକୁ ସେ ଓଡ଼ିଶା ଫେରି ଆସି ଡି.ପି.ଆଇ. ଭାବରେ ଅବସ୍ଥାପିତ ହେଲେ । ଦୀର୍ଘ ସାତବର୍ଷକାଳ କଟକ ଓ ଭୁବନେଶ୍ୱରର ଡି.ପି.ଆଇ. ଅଫିସରେ ଜଣେ ବେସରକାରୀ ଗ୍ରାମାଞ୍ଚଳ କଲେଜର ଅଧ୍ୟକ୍ଷ ଭାବରେ ତାଙ୍କ ସହିତ ମୋର ସମ୍ପର୍କ ଯେତିକି ଉତ୍ସାହବର୍ଦ୍ଧକ, ସେତିକି ଶିକ୍ଷାପ୍ରଦ ହୋଇଛି । ବିଧୁବାବୁ ଥିଲେ କର୍ମଯୋଗୀ, ଦୂରଦୃଷ୍ଟିସମ୍ପନ୍ନ ଜଣେ ଅସାଧାରଣ ସାଲିସ ବିହୀନ ପ୍ରଶାସକ । ଛଳନାକୁ ସେ ସହ୍ୟ କରିପାରୁ ନଥିଲେ । ଶିକ୍ଷକ ଭାବରେ ସେ ଥିଲେ ଯଥେଷ୍ଟ ସ୍ୱାଭିମାନୀ ।

ତାଙ୍କର ଶିକ୍ଷାବିଭାଗର ପ୍ରଶାସନିକ ଢ଼ାଞ୍ଚା, ବିଶ୍ୱବିଦ୍ୟାଳୟ ଓ ଉଚ୍ଚଶିକ୍ଷାର ଦୂରଦୃଷ୍ଟିସମ୍ପନ୍ନ ଯୋଜନା ଓ ଚିନ୍ତାଧାରା ସହିତ ଆମେ ପ୍ରାୟ ସମସ୍ତ ୧୫୦ ଜଣ ଅଧ୍ୟକ୍ଷ ପ୍ରଭାବିତ ହୋଇଥିଲୁ । ଆମେ ସମସ୍ତେ ଏବେ ଅବସରପ୍ରାପ୍ତ । ତାଙ୍କର ନୀତି ନିୟମ ଯୋଗୁଁ ଶିକ୍ଷାପ୍ରଶାସନରେ ଜଣେ ଅଧ୍ୟକ୍ଷକୁ ଯେତେ ପ୍ରୋତ୍ସାହନ ମିଳୁଥିଲା, ତାହା ୧୯୮୦ରେ ଧୀରେ ଧୀରେ ମଉଳିବାକୁ ଆରମ୍ଭ କଲା । ଯୁକ୍ତଦୁଇ ଶିକ୍ଷାପ୍ରଣାଳୀ ଗ୍ରହଣ କରିବା ପରେ ଉଚ୍ଚଶିକ୍ଷାର ଅବକ୍ଷୟ ହେବା ଆମେ ପୁରାତନ ଅଧ୍ୟକ୍ଷମାନେ ଅନୁଭବ କଲୁ । ବିଧୁବାବୁ ଡି.ପି.ଆଇ. ଭାବରେ ଓଡ଼ିଶାର ସମସ୍ତ ସରକାରୀ ଓ ବେସରକାରୀ କଲେଜର ଅଧ୍ୟକ୍ଷମାନଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ରଖୁଥିଲେ । ପନ୍ଦର ଦିନ ଓ ମାସକରେ କଲେଜର ମୁଖ୍ୟ ସମସ୍ୟାକୁ ନେଇ ଅନ୍ତତଃ ଗୋଟିଏ ଗୁପ୍ତପତ୍ର

ତାଙ୍କର ହସ୍ତଗତ ନହେଲେ ଅଧ୍ୟକ୍ଷମାନଙ୍କୁ ସେ ଯେମିତି ତାଗିଦା କରୁଥିଲେ ତାହା ପିଲାବେଳର "ହୋମ ୱାର୍କ" ନକରିଥିବା ଛାତ୍ରର ଅନୁଭୂତି ଠାରୁ ଆହୁରି ବଳି ପଡୁଥିଲା । ବର୍ଷକୁ ଥରେ ମେ' ବା ଜୁନ୍‌ମାସରେ ଶିକ୍ଷାବିଭାଗ ତରଫରୁ ଡି.ପି.ଆଇ.ଙ୍କ ତତ୍ତ୍ୱାବଧାନରେ ସାରା ଓଡ଼ିଶାର ଅଧ୍ୟକ୍ଷମାନଙ୍କର ଏକ ବାର୍ଷିକ ସମ୍ମିଳନୀ ଆହୂତ ହେଉଥିଲା । ଏହା ପ୍ରତିବର୍ଷ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ହେବାର ଆୟୋଜନ ହେଉଥିଲା । ବର୍ଷଯାକର ଅଳିଆ, ଆବର୍ଜନା, ଅସୁବିଧା ଓ ସମସ୍ୟାର ଏକ ଖୋଲାଖୋଲି ଆଲୋଚନା ମନ୍ତ୍ରୀ ଓ ସଚୀବଙ୍କ ଅବଗତ ପାଇଁ ଏ ସମ୍ମିଳନୀରେ ହେଉଥିଲା । ଫଳରେ ଅଧ୍ୟକ୍ଷମାନଙ୍କୁ ପ୍ରଶାସନ କ୍ଷେତ୍ରରେ ଅସୁବିଧା ହେଉନଥିଲା । ବିଧୁବାବୁଙ୍କ ସହିତ ୨/୩ ଦିନ ପର୍ଯ୍ୟନ୍ତ ବ୍ୟକ୍ତିଗତ ଅନୌପଚାରିକ ସମ୍ପର୍କ ଆମ ଯୁବ ଅଧ୍ୟକ୍ଷମାନଙ୍କ ମନରେ ଯଥେଷ୍ଟ ସାହସ ଓ ଶକ୍ତି ସଂଚାର କରୁଥିଲା । ସମସ୍ତଙ୍କ ସମ୍ମୁଖରେ ଅଧ୍ୟକ୍ଷମାନଙ୍କର ଭଲ କାର୍ଯ୍ୟପାଇଁ ଯେମିତି ପ୍ରଶଂସା ମିଳୁଥିଲା ତାଙ୍କଠାରୁ, ସେମିତି ମୃଦୁ ଭର୍ତ୍ସନା ମଧ୍ୟ ସେ କରୁଥିଲେ ଏ ସମ୍ମିଳନୀରେ ।

ପ୍ରଫେସର ଦାସଙ୍କର ପାଶ୍ଚାତ୍ୟ ଶିକ୍ଷାବିତ୍ ଓ ଶିକ୍ଷାପ୍ରଶାସକର ବାହ୍ୟଆବରଣ ତଳେ ଯେଉଁ ସୂକ୍ଷ୍ମ ରସାପ୍ଳୁତ କଳାନୁରାଗୀ ଭାରତୀୟ ମଣିଷଟି ଥିଲା, ତାହାର ପରିଚୟ କ୍ୱଚିତ ସେ ପ୍ରକାଶ କରୁଥିଲେ । ଆଧୁନିକ ନାଟକ, ଚିତ୍ରକଳା, ଶାସ୍ତ୍ରୀୟ ସଙ୍ଗୀତ, ଓଡ଼ିଶୀ ନୃତ୍ୟ ଓ ଚଳଚ୍ଚିତ୍ର ଉପରେ ସେ ଅସାଧାରଣ ଗବେଷଣା କରିଥିଲେ । ବହୁ ସଭା, ସମିତି, ସେମିନାର ଓ କମିଟିର ସଭ୍ୟ ଭାବରେ ମୁଁ ତାଙ୍କର ନିକଟତର ହେବାର ସୁଯୋଗ ପାଇଥିଲି ବିଗତ ଦୁଇ ଦଶନ୍ଧିରେ । ସବୁଠାରେ ତାଙ୍କର ପ୍ରଭୂତ ଜ୍ଞାନ ଓ ସୂକ୍ଷ୍ମ ବିଶ୍ଳେଷଣ ଆଗରେ ମୋ'ଠାରୁ ଯଥେଷ୍ଟ ବିଜ୍ଞ ବୁଦ୍ଧିଜୀବୀ ସଭ୍ୟ ମଧ୍ୟ ତାଙ୍କ ସହିତ ଏକମତ ହେଉଥିଲେ । ବିଧୁବାବୁ ଭାରତୀୟ ପୁରାତନ ଶାସ୍ତ୍ର ଓ ପରମ୍ପରା ବିଷୟରେ ଗଭୀର ବୈଜ୍ଞାନିକ ଅନୁଧ୍ୟାନ କରିଥିଲେ । ସକାଳୁ ପୂଜା କରିବା ଥିଲା ତାଙ୍କର ନିତିଦିନର ଅଭ୍ୟାସ । ଶେଷ ଜୀବନରେ ପ୍ରଫେସର ବିଧୂଭୂଷଣ ପାଲଟି ଯାଇଥିଲେ ଜଣେ ଆଧ୍ୟାତ୍ମିକ ମଣିଷ । ସାଂଖ୍ୟଯୋଗ, ଅରବିନ୍ଦ ଓ ବିବେକାନନ୍ଦଙ୍କ ପରି ମହାନ ଯୋଗୀଙ୍କ ଦର୍ଶନ ଓ ମନନ ମଧ୍ୟରେ ସେ ନିଜକୁ ହଜେଇ ଦେଇଥିଲେ । ଭାରତର ବିଭିନ୍ନ ଅଞ୍ଚଳରେ ଥିବା ବିବେକାନନ୍ଦ ମେମୋରିଏଲ୍ ଓ ରାମକୃଷ୍ଣ ମିଶନର ଶିକ୍ଷାନବୀଶ ତାଙ୍କୁ ନିମନ୍ତ୍ରଣ କରି ନେଉଥିଲେ ଅଭିଭାଷଣ ଦେବା ପାଇଁ । ଓଡ଼ିଶାରେ ଏ ବିଷୟରେ ଖୁବ୍ ଅଳ୍ପ ଆଲୋଚନା ହେଉଥିଲା, କାରଣ ପ୍ରଚାର ମାଧ୍ୟମରେ ସେ ବିଶ୍ୱାସ କରୁନଥିଲେ । ସରକାରଙ୍କ ଦୃଷ୍ଟିରେ ତେଣୁ ସେ ଜଣେ ଅବସରପ୍ରାପ୍ତ ଇଂରାଜୀ ଅଧ୍ୟାପକ ଭାବରେ ଶେଷ ପର୍ଯ୍ୟନ୍ତ ରହିଗଲେ । କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଯେଉଁଠାରେ ଯାହା କରଣୀୟ, ତାହାର ଆଲେଖ୍ୟ ସେ ଲେଖି ରଖିଯାଉଥିଲେ । ଏଥିରେ ସେ

ନିର୍ଣ୍ଣୟ କରିନାହାନ୍ତି । ଏ ଶତାବ୍ଦୀର ଜଣେ ମହାନ ଓଡ଼ିଆ ଶିକ୍ଷାବିତ୍ ଓ ଦାର୍ଶନିକ ଭାବରେ ଆମେ ତାଙ୍କର ଅସଂଖ୍ୟ ଛାତ୍ର ତାଙ୍କୁ ସ୍ମରଣ କରିଚାଲିବୁ । ଆଶାକରିବୁ, ଆସନ୍ତା ଶତାବ୍ଦୀର ଶିକ୍ଷାନବୀସଗଣ ତାଙ୍କର ପ୍ରାଥମିକ ଶିକ୍ଷାଠାରୁ ଉଚ୍ଚତମ ଶିକ୍ଷା ସମ୍ବନ୍ଧୀୟ ସମସ୍ତ ଆଲେଖ୍ୟକୁ ପୁନର୍ଜ୍ଜୀବିତ କରି ଏକ ସୁସ୍ଥ ସାମାଜିକ ଶିକ୍ଷାବ୍ୟବସ୍ଥାର ପ୍ରତିଷ୍ଠା ପାଇଁ ଚେଷ୍ଟିତ ହେବେ । ଏହାହିଁ ହେବ ସ୍ୱାଭିମାନୀ ପ୍ରଫେସର ବିଧୁଭୂଷଣ ଦାସଙ୍କ ପାଇଁ ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।   X   X   X

ହେ ମହାନ ଆଚାର୍ଯ୍ୟ, ଆପଣଙ୍କର ହଜାର ହଜାର ଛାତ୍ରଙ୍କ ମଧ୍ୟରୁ ମୋ'ପରି ସାଧାରଣ ଛାତ୍ରଟିଏ ଜୀବନରେ ଯାହା କିଛି ସଫଳତା ପାଇଛି, ସେଥିରେ ଆପଣଙ୍କର ଅବଦାନ ଓ ପ୍ରେରଣା ମୁଁ ତିଳତିଳ କରି ଅନୁଭବ କରିଛି । ବ୍ୟକ୍ତିଗତ ଭାବରେ ଆପଣଙ୍କ ତିରୋଧାନରେ ମୁଁ ମର୍ମାହତ । ଚଳିଶବର୍ଷ ପରେ-ପୁଣି ଥରେ ପିତୃବିୟୋଗର ଦାରୁଣ ଆଘାତରେ ମୁଁ ସନ୍ତୁଳିତ । ଆପଣଙ୍କର ପରିବାରବର୍ଗଙ୍କୁ ଆଶ୍ୱାସନା ଦେବା ପାଇଁ ମୁଁ ଭାଷା ପାଉନାହିଁ । ଈଶ୍ୱରଙ୍କୁ କେବଳ ପ୍ରାର୍ଥନା, ଆମ ସମସ୍ତଙ୍କୁ ସେ ସାହସ ଓ ଧୈର୍ଯ୍ୟ ପ୍ରଦାନ କରନ୍ତୁ ।

ଓଁ ଶାନ୍ତିଃ, ଓଁ ଶାନ୍ତିଃ, ଓଁ ଶାନ୍ତିଃ

ଅବସରପ୍ରାପ୍ତ ଅଧ୍ୟକ୍ଷ
ବ୍ରୀଟ୍ କଲୋନୀ
ନୟାପଲ୍ଲୀ
ଭୁବନେଶ୍ୱର-୧୨

# ପ୍ରଫେସର ବିଧୁଭୂଷଣ ଦାସଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି

*ଭବାନୀ ପ୍ରସାଦ ଚୌଧୁରୀ*

ମୁଁ ଯେତେବେଳେ ବି.ଜେ.ବି. କଲେଜରେ ଅଧ୍ୟାପନା କରୁଥିଲି, ସେହି ସମୟଠାରୁ ପ୍ରଫେସର ବିଧୁଭୂଷଣ ଦାସଙ୍କ ସମ୍ବନ୍ଧରେ ଅନେକ ପ୍ରଶଂସା ଶୁଣିଥିଲି, କିନ୍ତୁ ପ୍ରତ୍ୟକ୍ଷ ଭାବରେ ତାଙ୍କ ସଂସ୍ପର୍ଶରେ ଆସି ନଥିଲି । ଯାହା ହେଉ, ପ୍ରଫେସର ଦାସ ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳପତିଭାବରେ ଯୋଗ ଦେଲେ, ସେତେବେଳେ ଏହି ବିଶ୍ୱବିଦ୍ୟାଳୟର ଶିକ୍ଷକସଂଘ ତାଙ୍କୁ ଏକ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ । ତାହାର ପ୍ରତ୍ୟୁତ୍ତରରେ,ତାଙ୍କର ଭାଷଣ ସମୟରେ ଜଣେ ଲବ୍ଧପ୍ରତିଷ୍ଠିତ କଳାକାର ଭାବରେ ସେ ମୋ ନାଁ କହିଥିଲେ । କିନ୍ତୁ କୌଣସି କାରଣରୁ ମୁଁ ସେ ସଭାରେ ଉପସ୍ଥିତି ନଥିଲି । ପରଦିନ ମୋର ସହକର୍ମୀମାନେ ଏକଥା ମୋତେ ଜଣାଇଲେ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଯେ ପ୍ରଫେସର ଦାସ ମୋ ସମ୍ବନ୍ଧରେ ଏତେ କଥା ଜାଣିଲେ କିପରି ? ମୋର ବିସ୍ମୟ ଆହୁରି ଘନୀଭୂତ ହେଲା ଯେତେବେଳେ ସେ ମୋତେ ତାଙ୍କ କକ୍ଷକୁ  ଡକାଇ ପଠାଇଥିଲେ । ମୁଁ ବେଶ ଭୟଭୀତ ହୋଇପଡିଥିଲି । ମାତ୍ର ଅତି ଘରୋଇ ଭାବେ ସେ କହିଲେ, ''ଭବାନୀ ଆମର ଏହି ବିଶ୍ୱବିଦ୍ୟାଳୟ ତରଫରୁ ଏଠାରେ ଗୋଟିଏ ସଙ୍ଗୀତ ଶିକ୍ଷାକେନ୍ଦ୍ର ଖୋଲିବା । ତୁମେ ଯଥାଶୀଘ୍ର କଲିକତା ଯାଇ କିଛି ବାଦ୍ୟଯନ୍ତ୍ର କିଣି ଆଣିବ ।' ମୋତେ ଭାରୀ ଖୁସି ଲାଗିଲା ତାଙ୍କର ଏ ଅନ୍ତରଙ୍ଗତା ଏବଂ ସଙ୍ଗୀତ ପ୍ରୀତି ଦେଖି ।

ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ଛାତ୍ର କଲ୍ୟାଣ ନିର୍ଦ୍ଦେଶକ ଥିଲେ ପ୍ରଫେସର ଭୁବନାନନ୍ଦ ରାୟ । ବିଭିନ୍ନ କାରଣରୁ ତାଙ୍କ ସହିତ ମୋ ଚିହ୍ନାପରିଚୟ ଥିଲା । ଅଫିସିଆଲ୍ କାର୍ଯ୍ୟକ୍ରମକୁ ଖୁବ୍ ସଂକ୍ଷିପ୍ତ କରି ମୋତେ କଲିକତା ଯିବାର ନିର୍ଦ୍ଦେଶ ମିଳିଲା । ମୁଁ ଏବଂ ଛାତ୍ର କଲ୍ୟାଣ ବିଭାଗର ଜଣେ କର୍ମୀ କଲିକତାଯାଇ ଦଶଟି ହାୱାଇନ୍ ଗୀଟାର, ସ୍କେଲ୍ ଚେଞ୍ଜର ହାରମୋନିୟମ୍, ଦୁଇଟି ତାନପୁରା (Ladies and Gents), ଡୁବିତବଲା ଦୁଇଯୋଡା କିଣି ଆଣିଥିଲୁ । ପ୍ରଫେସର ଦାସ ମୋତେ କହିଲେ, ''ଭବାନୀ, ତୁମେ ଆଗ ଗୀଟାର କ୍ଲାସ ଆରମ୍ଭ କର । ତା'ପରେ କଣ୍ଠ ସଙ୍ଗୀତ ଓ ଓଡ଼ିଶୀ ନୃତ୍ୟ ଇତ୍ୟାଦି ଆରମ୍ଭ କରିବା ।' ତାଙ୍କର ଆନ୍ତରିକତା

[illegible]ରେ ଗୀଟାର କ୍ଲାସ ଆରମ୍ଭ ହେଲା, ବେଶ୍ କିଛି ଛାତ୍ରଛାତ୍ରୀ ଏହି କ୍ଲାସରେ ଯୋଗ ଦେଲେ । ମୁଁ ମଧ୍ୟ ଚଣ୍ଡିଗଡସ୍ଥିତ 'ପ୍ରାଚୀନ କଳାକେନ୍ଦ୍ର' ସହିତ ଏହାର ଆଫିଲିଏସନ୍ ପାଇଁ ପତ୍ରାଳାପ ଆରମ୍ଭ କରିଥିଲି । ସେ ସମୟରେ ବାଣୀବିହାରରେ କିଛି କିଛି ଛାତ୍ର ସମସ୍ୟା ଥାଏ । ମୁଁ ଅନୁଭବ କଲି ଯେ ଏହି ପରିସରରେ ସଙ୍ଗୀତର ମଧୁର ଓ ଶୀତଳ ବାତାବରଣ ସୃଷ୍ଟି କରିବା ପାଇଁ ତାଙ୍କର ଏହା ଏକ ଅନନ୍ୟ ସାଧୁ ଉଦ୍ୟମ । କିନ୍ତୁ ସେ ଏହି ବିଶ୍ୱବିଦ୍ୟାଳୟରୁ ଚାଲିଗଲା ପରେ କ୍ରମଶଃ ସଙ୍ଗୀତ ଶିକ୍ଷାକେନ୍ଦ୍ର ଅନ୍ଧକାରାବୃତ ହୋଇଗଲା । ଏହାପରେ ଅନେକ ସମୟରେ ତାଙ୍କ ଘରକୁ ମୁଁ ଯାଇଛି । ଗୀଟାରରେ ଓଡ଼ିଶୀ ସଙ୍ଗୀତ ବଜାଇବା ଶୁଣି ସେ ଭାରି ଖୁସି ହେଉଥିଲେ । ମୁଁ ସେତେବେଳେ 'ଭିତର କନିକା ସ୍ଥିତ ଲୁଣାଜଙ୍ଗଲ (Mangrove forest) ବିଷୟରେ ଗବେଷଣା କରୁଥାଏ । ସେ ସବୁବେଳେ ସଙ୍ଗୀତ ଚର୍ଚ୍ଚା ସହିତ ଏହିପରି ସଂସ୍କାର ସୁରକ୍ଷାଦିଗରେ ଲେଖାଲେଖି କରିବାକୁ ଉତ୍ସାହ ପ୍ରଦାନ କରୁଥିଲେ । ସେଥିପାଇଁ ତାଙ୍କ ନିକଟରେ ମୁଁ ଚିର ଋଣୀ ।

ତାଙ୍କର ଅସୁସ୍ଥତା କଥା ମୁଁ ଜାଣି ନଥିଲି । ହଠାତ୍ ଭୁବନେଶ୍ୱର ଦୂରଦର୍ଶନ ସମ୍ବାଦ ପ୍ରଚାରରେ ତାଙ୍କର ବିୟୋଗ ଖବର ଶୁଣି ମୁଁ ମର୍ମାହତ ହେଲି । ସେ ଜଣେ ଉଚ୍ଚକୋଟୀର ଶିକ୍ଷାବିତ୍ ତଥା ଉଚ୍ଚପଦାଧିକାରୀ ଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ । ଦୂରଦର୍ଶନ ଓ ସମ୍ବାଦପତ୍ରସବୁରେ ଏହା ପ୍ରକାଶିତ ହୋଇଅଛି । କିନ୍ତୁ ତାଙ୍କର କଳା-ସଂସ୍କୃତି ପ୍ରେମ ଏବଂ ପୃଷ୍ଠପୋଷକତା ବିଷୟରେ କୌଣସି ବିବରଣୀ ପାଇ ନାହିଁ । ତେଣୁ ମୋର ଏହି ଅନୁଭୂତି ପ୍ରକାଶ କରି, କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ ଭାଷାରେ, ''ଆମାର ମଥା ନତ କରେ ଦାଓ ହେ ତୋମାର ଚରନ ଧୂଳାର ତଲେ'' ଉଚ୍ଚାରଣ କରି ତାଙ୍କୁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କଲି ।

ପ୍ରଫେସର
ଉଦ୍ଭିଦ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର- ୭୫୧୦୦୪

# ଯୋଗଜନ୍ମା ବିଧୁଭୂଷଣ

*ରବୀନ୍ଦ୍ର କୁମାର ଜେନା*

ଯାଜପୁର ଜିଲ୍ଲାର କମାଗଡ ଗ୍ରାମର ପୂର୍ବତନ ଜମିଦାର ଥିଲେ ସ୍ୱର୍ଗତଃ ରାୟବାହାଦୂର ଦୁର୍ଗାଚରଣ ଦାସ । ତାଙ୍କର ପତ୍ନୀ ଥିଲେ ନାରୀକବି ନିର୍ମଳା ଦେବୀ । ଦୁର୍ଗାଚରଣ ବାବୁ ଇଂରେଜ ଶାସନ ସମୟରେ ଜଣେ ପ୍ରଶାସକଭାବେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ ।

ଦୁର୍ଗାଚରଣବାବୁ ପୁରୀଜିଲ୍ଲାର ମାଜିଷ୍ଟ୍ରେଟ୍ ଥିବା ସମୟରେ ତାଙ୍କର ପ୍ରଥମ ପୁତ୍ର ଜନ୍ମଗ୍ରହଣ କରିଥିଲେ ୧୯୨୨ ମସିହା ଅପ୍ରେଲମାସ ତା ୧୧ରିଖରେ । ସେହିଦିନ ଥିଲା ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ, ଅର୍ଥାତ୍ ପୂର୍ଣ୍ଣିମା ତିଥିକୁ ଆହ୍ୱାନ କରିଥିଲା । ସେହି ନବଜାତ ଶିଶୁଟି । ନାମଥିଲା ବିଧୁଭୂଷଣ ପୂର୍ଣ୍ଣମୀ ତିଥିରେ ଚନ୍ଦ୍ର ଯେଭଳି ସାରା ବିଶ୍ୱକୁ ପୂର୍ଣ୍ଣ ଆଲୋକିତ କରେ, ବିଧୁଭୂଷଣ ଠିକ୍ ସେହିପରି ନିଜର ଗୁଣ ଗାରିମାରେ ଦେଶକୁ ଆଲୋକିତ କରିଥିଲେ । ବାପା, ମା ବୋଧହୁଏ ସେ ନିମିତ୍ତ ବିଧୁଭୂଷଣ ନାମ ରଖିଥିଲେ ପୂର୍ଣ୍ଣମୀ ତିଥିକୁ ଆଖି ଆଗରେ ରଖି । ବିଧୁଭୂଷଣ ମଧ୍ୟ ସେହି ନାମର ଯଥାର୍ଥତା ପ୍ରତିପାଦନ କରିଯାଇଛନ୍ତି ।

ସେ ପିଲାଦିନରୁ ଅତି ମେଧାବୀ ଥିଲେ । ଆଠ ନଅ ବର୍ଷ ବୟସରେ ମଧ୍ୟ ଇଂରାଜୀ ଶିକ୍ଷା ସମାପ୍ତ କରି ମାଟ୍ରିକ୍ ଶ୍ରେଣୀରେ ନାମ ଲେଖାଇଥିଲେ । ପାଠ ପ୍ରତି ତାଙ୍କର ବେଶ୍ ଅନୁରାଗ ଥିଲା । ବହି ଧରି ପାଠ ପଢ଼ି ବସିଲେ ସେ ଖିଆପିଆ କଥା ଭୁଲିଯାଉଥିଲେ । ରାତି ଗୋଟାଏ, ଦୁଇଟା ଯାଏ ବିଛଣାରେ ଶୋଇରହି ପାଠ ପଢ଼ିବାର ଅଭ୍ୟାସ ତାଙ୍କର ଥିଲା ପିଲା ଦିନରୁ । କମ୍ ବୟସରେ ସେ ବେଦ, ବେଦାନ୍ତ, ଗୀତା, ରାମାୟଣ, ମହାଭାରତ ଆଦି ପୁରାଣ ମଧ୍ୟ ପଢ଼ି ଶେଷ କରିଥିଲେ ।

ମାଆ ନିର୍ମଳାଦେବୀ ବଡ ପୁଅର ପାଠ ପଢ଼ା ପ୍ରତି ଏତେ ଅନୁରାଗ ଦେଖି ବ୍ୟସ୍ତ ହୋଇପଡୁଥିଲେ । ସହଜେ ବାପା'ମାଙ୍କର ବଡପୁଅ, ଖିଆପିଆ ନକରି ପାଠ ପ୍ରତି ଏତେ ମମତା ଯେ ରାତିରେ ପାଠ ପଢୁଥିବା ସମୟରେ ଆଖିରେ ଚଷମା ଥାଇ ସେ ବିଛଣାରେ ଶୋଇ ପଡୁଥିଲେ । ମାଆ ରାତିରେ ଉଠି ପୁଅ ଆଖିରୁ ଚଷମା କାଢ଼ି ରଖି ଦିଅନ୍ତି । ବହି ନେଇ ଥାକରେ ରଖନ୍ତି । ପୁଅର ମଶାରି ଟାଙ୍ଗି ଦିଅନ୍ତି ଅଥବା ଚାଦର ଘୋଡାଇ ଦେଇ ଆଲୁଅ ଲିଭାଇ ଦିଅନ୍ତି ।

ବିଧୂଭୂଷଣ ପିଲାଦିନରୁ ମାଛ, ମାଂସ ପ୍ରତି ବିତସ୍ପୃହ ଥିଲେ । ଦେବାଦେବୀ ପୂଜାପାଠରେ ବହୁ ସମୟ ବିତାଉଥିଲେ । ମାଆ ନିର୍ମଳା ଦେବୀ ବଡ ପୁଅର ଏପରି ସ୍ୱଭାବରେ ଟିକେ ବିବ୍ରତ ଥିଲେ । ନିରାମିଷ ଆହାରୀ ଥିବାରୁ ମାତା ତାଙ୍କର ଶ୍ରଦ୍ଧାରେ ଭଲ ଜିନିଷଟିଏ ରଖି ତାଙ୍କୁ ନିରୋଳାରେ ଖାଇବାକୁ ଦେଉଥିଲେ । କିନ୍ତୁ ବିଧୂଭୂଷଣ ତାହା ନିଜେ ଏକାକୀ ନଖାଇ ସାନଭାଇମାନଙ୍କୁ ପାଖକୁ ଡାକି ସମାନ ଭାବରେ ବାଣ୍ଟି କରି ଖାଉଥିଲେ । ଏଥିରେ ମାଆ ତାଙ୍କୁ ବାରଣ କରୁଥିଲେ ମଧ୍ୟ ସେଥିପ୍ରତି ନଜର ନଦେଇ ନିଜ ପାଇଁ ମିଳୁଥିବା ସୁଖାଦ୍ୟକୁ ସାନଭାଇମାନଙ୍କୁ ପାଖକୁ ଡାକି ଖାଇବାକୁ ଦେଉଥିଲେ ।

ସଂସ୍କୃତ ଶାସ୍ତ୍ର ପ୍ରତି ଶ୍ରଦ୍ଧାଥିବାରୁ ମାତ୍ର ବାରତେର ବର୍ଷ ବୟସରେ ସେ ବେଦ, ବେଦାନ୍ତ, ଉପନିଷଦମାନ ପାଠ କରିଥିଲେ । ତାଙ୍କର ସ୍ମରଣଶକ୍ତି ଅତିପ୍ରଖର ଥିଲା । ସେ ଯାହା ଥରେ ପଢୁଥିଲେ, ତାହା ତାଙ୍କର ମନେ ରହିଯାଉଥିଲା । ମାଆ ତାଙ୍କୁ ଶ୍ରଦ୍ଧାରେ ଯେଉଁ ପଇସା ଦେଉଥିଲେ ଖେଳଛୁଟିରେ ଜଳଖିଆ କିଣିବା ନିମିତ୍ତି, ତହିଁରେ ସେ ଜଳଖିଆ ନଖାଇ ବହିପତ୍ର କିଣି ଆଣି ପଢୁଥିଲେ ।

ରାୟବାହାଦୂର ଦୁର୍ଗାଚରଣଙ୍କ ପରିବାରଟି ବେଶ୍ ବଡ ଥିଲା । ତାଙ୍କର ପରିବାର ସମ୍ପର୍କରେ ଯେତିକି ଜାଣିଛି, ନିମ୍ନରେ ତାହା ଉଲ୍ଲେଖ କଲି-

ଶାମାଚରଣ ଦାସ

ଦୁର୍ଗାଚରଣ ଦାସ- ପତ୍ନୀ ନିର୍ମଳା ଦେବୀ

୧. ବିଧୂଭୂଷଣ ଦାସ
୨. ପ୍ରିୟମ୍ବଦା ଦାସ (ମହାନ୍ତି)
୩. ଯାମିନୀ ମୋହନ ଦାସ
୪. ଚଣ୍ଡୀଚରଣ ଦାସ
୫. ଅନସୂୟା ଦାସ
୬. ଗୌରୀଶଙ୍କର ଦାସ
୭. ମନମୋହନ ଦାସ
୮. ରବି ନାରାୟଣ ଦାସ
୯. ଭବାନୀ ଶଙ୍କର ଦାସ
୧୦. ଅନ୍ନଦା ଶଙ୍କର ଦାସ
୧୧. ସାଗରିକା ଦାସ (ପଟ୍ଟନାୟକ)
୧୨. କସ୍ତୁରିକା ଦାସ (ପଟ୍ଟନାୟକ)
୧୩. ପ୍ରିୟରଞ୍ଜନ ଦାସ

ମାତ୍ର ପନ୍ଦର ବର୍ଷ ବୟସରେ ବିଧଭୂଷଣ ମାଟ୍ରିକ ପାଶ୍ କରିଥିଲେ । ସେତେବେଳେ ବିହାର ଓଡ଼ିଶାର ବିଶ୍ୱବିଦ୍ୟାଳୟ ପାଟନାଠାରେ ଥିଲା । ସେ ପାଟନା ବିଶ୍ୱବିଦ୍ୟାଳୟରୁ ୧୯୩୭ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରିଥିଲେ । ଏବେ ସୁଦ୍ଧା ଅନୁଗୁଳ ହାଇସ୍କୁଲ ବୋର୍ଡରେ ଏହା ଲେଖା ହୋଇ ରହିଅଛି ।

ଏହା ପରେ ସେ ବି.ଏ. ଓ ଏମ୍.ଏ ପରୀକ୍ଷା ସେହି ପାଟନା ବିଶ୍ୱବିଦ୍ୟାଳୟରେ ଦେଇଥିଲେ । ସ୍ନାତକୋତ୍ତର ଇଂରାଜୀ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ଜଣେ ଓଡ଼ିଆ ଛାତ୍ର ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଭାଷା ସାହିତ୍ୟରେ ସ୍ୱର୍ଣ୍ଣପଦକ ଲାଭ କରିବା କଥାଶୁଣି ତତ୍କାଳୀନ କଟକ କମିଶନର ମିଃ ପାର୍ଲ୍ ଦୁର୍ଗାଚରଣ ବାବୁଙ୍କୁ ଡକାଇଲେ । ଦୁର୍ଗାଚରଣବାବୁ ସେତେବେଳେ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ଭାବେ ଅବସ୍ଥାପିତ ହୋଇଥାନ୍ତି । ମିଃ ପାର୍ଲ୍ ଦୁର୍ଗାଚରଣ ବାବୁଙ୍କ ସହ କରମର୍ଦ୍ଦନ କରି ଖୁସି ହୋଇ ଏପରି ମେଧାବୀ ଛାତ୍ରଙ୍କୁ ରେଭେନ୍ସା କଲେଜରେ ନିଯୁକ୍ତି ଦେବାକୁ ଇଚ୍ଛା ପ୍ରକାଶ କଲେ । ଏଥିରେ ଦୁର୍ଗାଚରଣ ବାବୁ ସହମତି ଦେବାରୁ ବିଧୁଭୂଷଣଙ୍କୁ ସେଠାକୁ ଡକାଗଲା ।

ସେତେବେଳର କମିଶନର ରେଭେନ୍ସା କଲେଜରେ ସର୍ବେସର୍ବା । ସେ ବିଧୁଭୂଷଣଙ୍କୁ ପାଖକୁ ଡାକି ତାଙ୍କର କୃତିତ୍ୱ ପାଇଁ ଖୁସି ହୋଇ କୁଣ୍ଢାଇ ପକାଇଲେ ଓ ରେଭେନ୍ସା କଲେଜର ଅଧ୍ୟାପକ ଭାବେ ନିଯୁକ୍ତି ପତ୍ର ଦେଲେ । ସେହି ୧୯୪୪ ମସିହାରେ ବିଧୁବାବୁ ରେଭେନ୍ସା କଲେଜର ଇଂରାଜୀ ଅଧ୍ୟାପକ ଭାବେ ଯୋଗ ଦେଲେ ।

ରେଭେନ୍ସା କଲେଜର ଅଧ୍ୟାପକଭାବେ ଯୋଗଦେବାବେଳକୁ ତାଙ୍କର ସାନଭାଇମାନଙ୍କ ମଧ୍ୟରୁ କେତେକ ସେହି କଲେଜ୍ର ଛାତ୍ର ଥିଲେ । ବିଧୁବାବୁଙ୍କର ପାଠ ପ୍ରତି ଏତେ ଅନୁରାଗ ଥିଲା ଯେ ସେ ସାନଭାଇମାନେ ପାଠ ପଢ଼ାପଢ଼ି କିପରି କରୁଛନ୍ତି, ତାହା ତାଙ୍କର ସହକର୍ମୀ ଅଧ୍ୟାପକ ବନ୍ଧୁମାନଙ୍କୁ ପଚାରି ବୁଝୁଥିଲେ । ସାନଭାଇମାନେ କିପରି ଉତ୍ତମ, ଚରିତ୍ରବାନ ହେବେ, ପାଠ ପଢ଼ାପ୍ରତି ବିଶେଷ ଧ୍ୟାନ ଦେବେ ଓ ଏଥିରେ ଯେଭଳି ତ୍ରୁଟି ନ କରନ୍ତି, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ ।

ବହୁ ସମୟ ପାଠପଢ଼ାରେ କଟାଉଥିବାରୁ ସେ ଅତି ଗମ୍ଭୀର ଜଣାପଡୁଥିଲେ । ଯେଉଁମାନେ ତାଙ୍କ ସହ ମିଶିଛନ୍ତି, ସେମାନେ ବେଶ୍ ଉପଲବ୍ଧି କରିଛନ୍ତି ସେ କିପରି ଦୟାର୍ଦ୍ର ଓ ହୃଦୟବାନ୍ । ପିଲାଟି ଦିନରୁ ଯିଏ ଦେବାଦେବୀ ପୂଜାପାଠରେ ମନ ଦେଇଛି, ତାରହୃଦୟ ସ୍ୱଭାବତଃ ଦୁଃଖୀ, ଦରିଦ୍ର, ଅସହାୟ ପୀଡିତ ଲୋକଙ୍କ ପାଇଁ ବ୍ୟାକୁଳ ହେବ । ଅନ୍ୟର ବ୍ୟଥାରେ ସେ ବ୍ୟଥିତ ହୋଇ ପଡୁଥିଲେ । ଡି.ପି.ଆଇ. ଥିବା ସମୟରେ ଅଫିସର କର୍ମଚାରୀ ଯଦି କେହି ରୋଗବ୍ୟାଧିରେ ପଡୁଥିଲେ, ତା

ହେଲେ ସେ ତା'ର ଚିକିତ୍ସା କରିବା ନିମିତ୍ତ ଆବଶ୍ୟକ ବ୍ୟବସ୍ଥା ଗ୍ରହଣ କରୁଥିଲେ । ନିଜେ ଡାକ୍ତର ପାଇଁ ଯିବା, ଡାକ୍ତରଙ୍କ ସହ ପରାମର୍ଶ କରିବା, ଡକ୍ତରଖାନାରେ ଶଯ୍ୟା ବ୍ୟବସ୍ଥା କରି ଚିକିତ୍ସା କରାଇବା ଦାୟିତ୍ୱ ନିଜେ ହିଁ କରୁଥିଲେ ।

ପ୍ରଫେସର ଦାସଙ୍କ ପାଖେ ପାଖେ ରହି କାମ କରିବାର ସୁଯୋଗ ମୁଁ ଲାଭ କରିଛି । ଶିକ୍ଷା ନିର୍ଦ୍ଦେଶକ ଭାବେ ସେ ୧୯୬୮ ମସିହା ଅଗଷ୍ଟ ମାସ ତା ୧ ରିଖରେ ଯୋଗ ଦେଇଥିଲେ । ସେ ହେଉଛନ୍ତି ପ୍ରଥମ ଓ ଶେଷ ଡି.ପି.ଆଇ ଯେ'କି ଦୀର୍ଘ ଦିନ ଧରି ସେ ପଦରେ ଅଧିଷ୍ଠିତ ହୋଇଥିଲେ । ତାଙ୍କର ସେହି ପ୍ରଶାସନିକ ଦାୟିତ୍ୱ ବହନ କରିବା ସମୟରେ ସେ ଶିକ୍ଷା ବିଭାଗରେ ବହୁ ସଂସ୍କାର ଆଣିଥିଲେ । ସେତେବେଳେ ସେ ଶିକ୍ଷା ସଂସ୍କାର ନିମିତ୍ତ ଯେଉଁ ପ୍ରସ୍ତାବ ସରକାରଙ୍କ ନିକଟରେ ଉପସ୍ଥାପନ କରିଥିଲେ, ସେଥି ମଧ୍ୟରୁ ଅଧିକାଂଶ କାର୍ଯ୍ୟକାରୀ କରାଇବାରେ ସମର୍ଥ ହୋଇଥିଲେ । ଅଉ କେତେକ ପ୍ରସ୍ତାବକୁ ଯଦିଓ ସରକାର ତାଙ୍କ ଥିବା ସମୟରେ ଗ୍ରହଣ କରିନଥିଲେ, ତେବେ ପରବର୍ତ୍ତୀ ସମୟରେ ଗ୍ରହଣ କରିଥିଲେ । ସେଥି ନିମିତ୍ତ ସେ ବହୁ ସମୟରେ କହନ୍ତି - 'ଦେଖ ରବି ! ମୁଁ ଯେଉଁ ପ୍ରସ୍ତାବ ୧୫/୨୦ ବର୍ଷ ପୂର୍ବେ ସରକାରଙ୍କୁ ଦେଇଥିଲି, ତାହା ସରକାର ସେତେବେଳେ ଗ୍ରହଣ ନକରି ଏବେ ତା'ର ସାରମର୍ମ ଉପଲବ୍ଧି କରି ଗ୍ରହଣ କରୁଛନ୍ତି ।' ସେଥି ମଧ୍ୟରୁ ପ୍ରାଥମିକ ଶିକ୍ଷା ସଂସ୍କାର ଅନ୍ୟତମ । ତାଙ୍କ ଦ୍ୱାରା ପ୍ରସ୍ତୁତ ୧୩୨ ଗୋଟି ଶିକ୍ଷା ସଂସ୍କାର ପ୍ରସ୍ତାବର ଏକ ଟିପ୍ପଣୀ ମୁଁ ସଂଗ୍ରହ କରିଛି ଓ ତନ୍ମଧ୍ୟରୁ ଅଧିକାଂଶକୁ ସେ କାର୍ଯ୍ୟକାରୀ କରାଇ ପାରିଥିଲେ ଶିକ୍ଷା ନିର୍ଦ୍ଦେଶକ ଥିବା ସମୟରେ । ତାଙ୍କ ଭଳି ଯୋଗଜନ୍ମା ପୁରୁଷ ଆଉ ଓଡ଼ିଶାରେ ଜନ୍ମ ହେବେ କି ନାହିଁ ସନ୍ଦେହ ।

ଅବସରପ୍ରାପ୍ତ ଉପ ନିର୍ଦ୍ଦେଶକ
ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟ



# ଓଡ଼ିଶାର ଉଚ୍ଚଶିକ୍ଷା ବ୍ୟବସ୍ଥା ଓ ପ୍ରଫେସର୍ ଦାସଙ୍କ ଅବଦାନ

*ଦିଗମ୍ବର ମିଶ୍ର*

ପ୍ରଫେସର ବି. ଦାସ- ଏଇ ନାଆଁରେ ଓଡ଼ିଶାର ଶିକ୍ଷା ଓ ବୌଦ୍ଧିକ କ୍ଷେତ୍ରରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ପରିଚିତ ପ୍ରଫେସର ବିଧୁଭୂଷଣ ଦାସ ଥିଲେ ଜଣେ ଦକ୍ଷ ଶିକ୍ଷା ପ୍ରଶାସକ ଏବଂ ଯଥାର୍ଥ ଅର୍ଥରେ ବୁଦ୍ଧିଜୀବୀ । ଖୁବ୍ ତରୁଣ ବୟସରେ ସେ ରେଭେନ୍‌ସା କଲେଜର ଇଂରାଜୀ ପ୍ରଫେସର ହୋଇପାରିଥିଲେ, ଯେଉଁ କଲେଜରେ ହିଁ କେବଳ ସେତେବେଳେ ଇଂରାଜୀ ସ୍ନାତକୋତ୍ତର ଶିକ୍ଷା ସୁଯୋଗ ମିଳୁଥିଲା । ଏହା ଫଳରେ ଇଂରାଜୀ ପଢୁଥିବା ବହୁ ଛାତ୍ର ପ୍ରଫେସର ଦାସଙ୍କ ସଂସ୍ପର୍ଶରେ ଆସିଥିଲେ ଏବଂ ନିଜ ନିଜର ଉଜ୍ଜ୍ୱଳ କ୍ୟାରିଅର୍ ନିର୍ମାଣରେ ପ୍ରଫେସର ଦାସଙ୍କ ଅଧ୍ୟାପନା ସେମାନଙ୍କୁ ଅନୁପ୍ରେରିତ କରିଥିଲା । ଯେଉଁ ସମୟରେ ମୁଁ ଯାଜପୁର ସବ୍‌ଡିଭିଜନ୍‌ର ଏକ ଅଖ୍ୟାତ ଗ୍ରାମୀଣ ହାଇସ୍କୁଲ୍ (ଅହିୟାସ)ରୁ ପାଶ୍ କରି ରେଭେନ୍‌ସାକୁ ଆସିଲି, ସେ ସମୟରେ ପ୍ରଫେସର ଦାସଙ୍କ କ୍ଲାସରେ ବସିବାର ସୁଯୋଗ ଏକ ବିରଳ ସମ୍ମାନ ଥିଲା । ପରେ ମୁଁ ମୋର ବଡ଼ଭାଇନାଙ୍କଠାରୁ ଜାଣିଥିଲି ଯେ ପ୍ରଫେସର ଦାସଙ୍କ ଘର ମଧ୍ୟ ଥିଲା ଯାଜପୁର । ତାଙ୍କ ପିତା ଥିଲେ ସେ ସମୟର ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ପ୍ରଶାସକ । ତେବେ ପରିବାରର ଆର୍ଥିକ ସ୍ୱଚ୍ଛଳତା, ସାମାଜିକ ସମ୍ଭ୍ରାନ୍ତ୍ୟ ଏବଂ ଆଦବକାଇଦା ତରୁଣ ବିଧୁଭୂଷଣଙ୍କୁ ଜ୍ଞାନଚର୍ଚ୍ଚା କିମ୍ବା ଅଧ୍ୟାପନା ରୁଚିରୁ ନିବୃତ୍ତ କରିପାରି ନଥିଲା । ସମୟ କ୍ରମେ ସେ ଅଧ୍ୟାପନାରୁ ପ୍ରଶାସନ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ରାଜ୍ୟ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଦାୟିତ୍ୱ ଗ୍ରହଣ କରିଥିଲେ । ଶିକ୍ଷା ନିର୍ଦ୍ଦେଶକ ପଦବୀ ହେଉ ବା ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଦାୟିତ୍ୱରେ ହେଉ, ଯେକୌଣସି ପ୍ରଶାସନିକ ଦାୟିତ୍ୱରେ ଥିଲେ ସୁଦ୍ଧା ତାଙ୍କ ଭିତରୁ ଗବେଷକ ବ୍ୟକ୍ତିତ୍ୱଟି କଦାପି ମଳିନ ପଡୁନଥିଲା ।

ତିନି ବର୍ଷ ତଳେ ତାଙ୍କଠୁ ଗୋଟିଏ ଦୀର୍ଘ ଚିଠି ପାଇଥିଲି, ଯେଉଁଥିରେ ସେ ସାମୁଏଲ ହଂଟିଂଗଟନଙ୍କ ପ୍ରବନ୍ଧ (The Clash of Civilization) ସମ୍ପର୍କରେ ମୋତେ କିଛି ପ୍ରଶ୍ନ ପଚାରିଥିଲେ । ଏହି ପ୍ରବନ୍ଧଟି ସେତେବେଳେ ବୁଦ୍ଧିଜୀବୀ ମହଲରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ଜଣେ ଭାରତୀୟ ଭାବରେ ମୋର ଏ ସମ୍ପର୍କରେ

ମ[illegible] ତାହା ହିଁ ସେ ଜାଣିବାକୁ ଚାହିଁଥିଲେ । ଏହି ପ୍ରଶ୍ନ ମୋ ପାଇଁ ବାସ୍ତବିକ ଥିଲା ଗୋଟିଏ ଚ୍ୟାଲେଞ୍ଜ୍ । ମୁଁ ମୋର ସାଧ୍ୟମତେ ତାଙ୍କ ପ୍ରଶ୍ନର ଉତ୍ତର ଦେବା ପାଇଁ ଚେଷ୍ଟା କରିଥିଲି । ଜାଣେନା, ମୋ ଉତ୍ତର ତାଙ୍କର ଅନ୍ୱେଷା ଅଥବା ପ୍ରତ୍ୟାଶାର ସୀମା ଛୁଇଁ ପାରିଥିଲା କି ନାହିଁ ।

ଭବିଷ୍ୟତର ଐତିହାସିକମାନେ ଦିନେ ଏକଥା ନିଶ୍ଚୟ ସ୍ୱୀକାର କରିବେ ଯେ ଷଷ୍ଠ ଦଶକରେ ପ୍ରତିଷ୍ଠିତ ସମ୍ବଲପୁର ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଉନ୍ନତ ପାଠ୍ୟକ୍ରମ ଓ ଯୋଜନା ପ୍ରଣୟନ କ୍ଷେତ୍ରରେ ପ୍ରଫେସର ବିଧୁଭୂଷଣ ଦାସ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ସେତେଦିନ ଯାଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଥିବା ଉତ୍କଳ ବିଶ୍ୱବିଦ୍ୟାଳୟର ଗୁଣାତ୍ମକ ମାନ ବଜାୟ ରଖିବା ସହିତ ନୂଆ ବିଶ୍ୱବିଦ୍ୟାଳୟ ଯୋଡିକର ଦାୟିତ୍ୱ ବୁଝିବା କିଛି କମ୍ ଆୟାସସାଧ୍ୟ ନଥିଲା ।

ପ୍ରଫେସର ଦାସ ଅକ୍ସଫୋର୍ଡ ଗଲେ ଏବଂ ତା'ପରେ ଉଚ୍ଚତର ଗବେଷଣାପାଇଁ ଆମେରିକାର ପ୍ରତିଷ୍ଠିତ କଲମ୍ବିଆ ବିଶ୍ୱବିଦ୍ୟାଳୟ । ପ୍ରଫେସର ପରିଜାଙ୍କ ପରି ପ୍ରଫେସର ଦାସ ମଧ୍ୟ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ନେତୃତ୍ୱ ନେବାର ବିଧିନିର୍ଦ୍ଦିଷ୍ଟ ଦାୟିତ୍ୱ ଘେନି ଆସିଥିଲେ । ସେମାନଙ୍କର ନେତୃତ୍ୱ ଯୋଗୁ ଓଡ଼ିଆ ଯୁବକ ଓ ଯୁବତୀମାନେ ଜାତୀୟ ସ୍ତରରେ ବିଭିନ୍ନ ପ୍ରତିଯୋଗିତାରେ ପ୍ରାୟ ତିନି ଦଶନ୍ଧି ଧରି କୃତିତ୍ୱ ପ୍ରଦର୍ଶନ କରିପାରିଥିଲେ । ରାଜନୀତି କ୍ଷେତ୍ରରେ ପ୍ରଫେସର ଦାସଙ୍କ ଆଦର୍ଶ ଥିଲେ ବିଜୁ ପଟ୍ଟନାୟକ । ଓଡ଼ିଶାର ଶିକ୍ଷା ବିକାଶରେ ବିଜୁ ପଟ୍ଟନାୟକଙ୍କ ଅବଦାନ ଯଥେଷ୍ଟ । ଶିକ୍ଷା କ୍ଷେତ୍ରରେ ବିଜୁ ପଟ୍ଟନାୟକଙ୍କର ଏହି ଆଗ୍ରହ ପଛରେ ପ୍ରଫେସର ଦାସଙ୍କ ପ୍ରଭାବ ଥିଲା ପ୍ରଚୁର । କାରଣ ପ୍ରଫେସର ବିଧୁଭୂଷଣ ଦାସ ଭୁବନେଶ୍ୱର ସଚିବାଳୟର ଅମଲାତାନ୍ତ୍ରିକ ବ୍ୟବସ୍ଥାକୁ ଭାଙ୍ଗି ତହିଁରେ ଦକ୍ଷତା ଆଣିପାରିଥିଲେ । ରାଜନୀତିକ ଦୃଷ୍ଟିଭଙ୍ଗୀରୁ ସବୁକଥାକୁ ଦେଖୁଥିବା କଥାକଥିତ ସୁବିଧାବାଦୀ ଅମଲା ଓ ପ୍ରଶାସକମାନଙ୍କ ମଧ୍ୟରେ ସେ ଥିଲେ ଏକ ଉଜ୍ଜ୍ୱଳ ବ୍ୟତିକ୍ରମ । ସମୟେ ସମୟେ ଅହଂକାର ପରି ପ୍ରତୀୟମାନ ହେଉଥିବା ତାଙ୍କର ବୌଦ୍ଧିକ ସ୍ୱାଭିମାନକୁ ଅନେକେ ଈର୍ଷା କରୁଥିଲେ । କିନ୍ତୁ ଏହି ପ୍ରତିଦ୍ୱନ୍ଦ୍ୱୀମାନେ ପ୍ରଫେସର ଦାସଙ୍କ ଯୋଗ୍ୟତା ଏବଂ ପ୍ରଜ୍ଞା, କୌଣସିଟିରେ ପାଖାପାଖି ହୋଇପାରୁନଥିଲେ ।

ପ୍ରଫେସର ଦାସ ସବୁବେଳେ ପ୍ରତିଭାର ଅନ୍ୱେଷଣ କରୁଥିଲେ । ଏହି କର୍ମକୁ ସେ କେବଳ ଶିକ୍ଷାସ୍ତର ଭିତରେ ସୀମିତ ରଖୁନଥିଲେ, ପ୍ରଶାସନରେ ଥିବା ପ୍ରତିଭାଧରମାନଙ୍କୁ ମଧ୍ୟ ସେ ଖୋଜି ବାହାର କରୁଥିଲେ । ସ୍ଫୁର୍ତ୍ତିବାନ୍ ପ୍ରଫେସର ବି.ବି. ଜେନା ଓ ଏବର ଗୋକୁଳାନନ୍ଦ ଦାସଙ୍କ ପରି, ଧୀରସ୍ଥିର ଅଧ୍ୟାପକମାନଙ୍କୁ ପ୍ରଫେସର ଦାସ ପ୍ରଥମେ ସ୍ୱୀକୃତି ଜଣାଇଥିଲେ ।

ଏହି ପ୍ରସଙ୍ଗରେ ୧୯୭୦ରେ ଗୋଟିଏ କଥା ମନେ ପଡୁଛି । ଡକ୍ଟର ଗୋକୁଳାନନ୍ଦ ଦାସ ସେତେବେଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଗଣିତ ପ୍ରଫେସର ପାଇଁ ଆବେଦନପ୍ରାର୍ଥୀ ଥାଆନ୍ତି । ସେତେବେଳେକୁ ସେ ରିଡର- ଗଣିତ ବିଭାଗର ମୁଖ୍ୟ । ମୁଁ ଗଙ୍ଗାଧର ମେହେର କଲେଜର ଅଧ୍ୟାପକ ଥାଏ ଏବଂ ବିଶ୍ୱବିଦ୍ୟାଳୟ ସିନେଟ୍‌କୁ ନିର୍ବାଚିତ ହୋଇଥାଏ । ଡକ୍ଟର ଗୋକୁଳାନନ୍ଦ ଦାସଙ୍କ ଯୋଗ୍ୟତା ଦୃଷ୍ଟିରୁ ସେ ପ୍ରଫେସର ଭାବେ ନିଯୁକ୍ତି ପାଇବା ନେଇ ଆମେ ସମସ୍ତେ ନିଃସନ୍ଦେହ ଥାଉ । ମାତ୍ର କେତେକ ବ୍ୟକ୍ତି ଆଞ୍ଚଳିକବାଦର କଥା ଉଠେଇ ଆଉ ଜଣେ ଅଧ୍ୟାପକଙ୍କ ସପକ୍ଷରେ ଲବି କଲେ । କିନ୍ତୁ ସିଲେକ୍‌ସନ୍ ବୋର୍ଡର ଅନ୍ୟତମ ସଦସ୍ୟ ପ୍ରଫେସର ବିଧୁଭୂଷଣ ଦାସଙ୍କ ନିରପେକ୍ଷ ଏବଂ ଅନାସକ୍ତ ଦୃଷ୍ଟିଭଙ୍ଗୀ ଯୋଗୁ ଏପରି ସଙ୍କୀର୍ଣ୍ଣ ଉଦ୍ୟମ ସଫଳ ହୋଇପାରିନଥିଲା । ଗତ କିଛି ବର୍ଷହେଲା ଓଡ଼ିଶାର ବୌଦ୍ଧିକ ସ୍ତରରେ ପରିଲକ୍ଷିତ ଅବକ୍ଷୟ ନେଇ ପ୍ରଫେସର ବିଧୁଭୂଷର ଦାସ ଚିନ୍ତିତ ରହୁଥିଲେ ।

ପ୍ରଫେସର ଦାସ ଥିଲେ ଯଶସ୍ୱୀ ଶିକ୍ଷକ । କୁହାଯାଏ, ଯଶସ୍ୱୀ ଶିକ୍ଷକମାନଙ୍କର ମୃତ୍ୟୁ ହୁଏ ନାହିଁ । ତାଙ୍କର ପ୍ରଭାବ ବହୁ ମନ ଓ ମନୀଷୀଙ୍କୁ ଚିରଦିନ ଆଲୋକିତ କରୁଥାଉ ।

ଅଧ୍ୟାପକ, ମାଇଲ୍‌ସ କଲେଜ
ଆଲବାମା ବିଶ୍ୱବିଦ୍ୟାଳୟ
ବର୍ମିଂଗହାମ
ଯୁକ୍ତରାଷ୍ଟ୍ର ଆମେରିକା

# ପ୍ରଫେସର ବିଧୁଭୂଷଣ ଦାସଙ୍କ ଛାତ୍ର

**ଗଣେଶ୍ୱର ମିଶ୍ର**

ବେଶ୍ କିଛି ବର୍ଷ ତଳେ କୌଣସି ବସ୍‌ରେ ମୋ ନିକଟରେ ବସିଥିବା ଜଣେ ସହଯାତ୍ରୀଙ୍କ ସହିତ ଆଳାପ ହେଲା । ମୁଁ ନିଜକୁ ଜଣେ ଇଂରାଜୀ ଅଧ୍ୟାପକ ବୋଲି ପରିଚୟ ଦିଅନ୍ତ ସେ କହିଲେ, 'ମୁଁ ପ୍ରଫେସର ବିଧୁଭୂଷଣ ଦାସଙ୍କ ଛାତ୍ର ।'

ସେଦିନର ସହଯାତ୍ରୀଙ୍କ ନାମ ବା ଠିକଣା ମୋତେ ଜଣାନାହିଁ । କିନ୍ତୁ ବିଧୁଭୂଷଣ ଦାସଙ୍କ ଛାତ୍ର ବୋଲି ନିଜର ପରିଚୟ ଦେବାରେ ତାଙ୍କର ଗର୍ବ ଓ ଆତ୍ମସନ୍ତୋଷ ମୋର ସ୍ପଷ୍ଟ ମନେ ଅଛି ।

ପ୍ରଫେସର ବିଧୁଭୂଷଣ ଦାସ ରେଭେନ୍‌ସା କଲେଜରେ ବହୁବର୍ଷ ଅଧ୍ୟାପନା କରିଥିଲେ । ରେଭେନ୍‌ସା କଲେଜ ହିଁ ଯୁଗ ଯୁଗ ଧରି ଥିଲା ଓଡ଼ିଶାର 'ମଣିଷ ତିଆରି କାରଖାନା' । ବିଧୁଭୂଷଣ ଦାସ ହଜାର ହଜାର ଛାତ୍ରଙ୍କୁ ପଢ଼ାଉଥିଲେ । ସେହି ଛାତ୍ରମାନଙ୍କ ମଧ୍ୟରୁ ଅନେକେ ଶିକ୍ଷା, ପ୍ରଶାସନ ଓ ଅନ୍ୟାନ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଥିଲେ । ସେହି ପ୍ରତିଷ୍ଠିତ ଓ ସେଦିନ ବସ୍‌ର ସହଯାତ୍ରୀଙ୍କ ଭଳି ସାଧାରଣ ବ୍ୟକ୍ତି-ସମସ୍ତେ ବିଧୁଭୂଷଣ ଦାସଙ୍କୁ ସ୍ମରଣ କରନ୍ତି । ରେଭେନ୍‌ସା କଲେଜର ଶହ ଶହ ଅଧ୍ୟାପକଙ୍କଠାରୁ ବିଧୁଭୂଷଣ ଦାସ ଥିଲେ ଭିନ୍ନ । ତାଙ୍କର ବିଦ୍‌ବତ୍ତା, ଆଭିଜାତ୍ୟ ଓ ବ୍ୟକ୍ତିତ୍ୱ ଛାତ୍ରଛାତ୍ରୀମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରୁଥିଲା ।

ବିଧୁଭୂଷଣ ଦାସ ମୋତେ ସିଧାସଳଖ ଶ୍ରେଣୀଗୃହରେ ପଢ଼ାଇ ନଥିଲେ । ମୁଁ କଲେଜରେ ଛାତ୍ର ଥିବା ସମୟରେ ସେ ଥିଲେ ଓଡ଼ିଶା ବାହାରେ । ୧୯୬୪ରେ ରେଭେନ୍‌ସା କଲେଜ ଇଂରାଜୀ ସେମିନାରରେ ଆଧୁନିକ କବିତା ସମ୍ପର୍କରେ ତାଙ୍କର ଭାଷଣଟିଏ ଶୁଣିବାର ସୁଯୋଗ ଘଟିଲା । ଆଧୁନିକ ଇଂରାଜୀ କବିତା କହିଲେ ସେତେବେଳେ ମୋଟାମୋଟି ଆମେ ଟି.ଏସ୍.ଏଲିଅଟ୍‌ଙ୍କ କବିତାକୁ ହିଁ ବୁଝୁଥିଲୁ । ଟି.ଏସ. ଏଲିଏଟ୍‌ଙ୍କ ପରେ ଇଂରାଜୀ କବିତାରେ ବିଷୟବସ୍ତୁ ଓ ଆଙ୍ଗିକରେ ଯେଉଁ ପରିବର୍ତ୍ତନ ହୋଇଥିଲା, ତାହା ପ୍ରାଞ୍ଜଳ ଭାବରେ ପ୍ରଫେସର ଦାସ ତାଙ୍କର ଦୀର୍ଘ ଭାଷଣରେ ବ୍ୟାଖ୍ୟା କଲେ ।

ଇଂରାଜୀ ସାହିତ୍ୟର ଅଧ୍ୟୟନ, ଅଧ୍ୟାପନା, ଗବେଷଣା କ୍ଷେତ୍ରରେ ସମଗ୍ର ଭାରତରେ ବିଧୁଭୂଷଣ ଦାସଙ୍କ ସ୍ଥାନ ଖୁବ୍ ଉଚ୍ଚରେ । ସାଧାରଣତଃ ପ୍ରବୀଣ ଅଧ୍ୟାପକ ବା ଶିକ୍ଷାବିତ୍‌ମାନେ ରକ୍ଷଣଶୀଳ ହୋଇପଡନ୍ତି । ମାତ୍ର ପ୍ରଫେସର ଦାସ ଥିଲେ ଠିକ୍

ଓଲଟା । ଭାଷା, ସାହିତ୍ୟ ଓ ଗବେଷଣା କ୍ଷେତ୍ରରେ ନୂତନତମ ତଥ୍ୟର ସେ ଖବର ରଖୁଥିଲେ । ପାଠ୍ୟକ୍ରମର ନବୀକରଣ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ । ୧୯୭୩ ମସିହାରେ ଓଡ଼ିଆ ଉପନ୍ୟାସ 'ଅମୃତର ସନ୍ତାନ'ର ଇଂରାଜୀ ଅନୁବାଦ କରିବା ପାଇଁ ତାଙ୍କ ତତ୍ତ୍ୱାବଧାନରେ ମୁଁ ପି.ଏଚ.ଡି. ପାଇଁ ରେଜିଷ୍ଟ୍ରେସନ୍ କଲି । ଭାରତୀୟ ଭାଷାରୁ ଅନୁବାଦ ପାଇଁ ଇଂରାଜୀରେ ପି.ଏଚ.ଡି. ପ୍ରଦାନ କରାଯାଇପାରେ- ଏପରି ଚିନ୍ତାଧାରା ସେ ସମୟରେ ଅନେକଙ୍କୁ ଉଦ୍‌ଭଟ ମନେ ହୋଇଥାଇପାରେ । ଆଜି ଦିଲ୍ଲୀ ଓ ଅନ୍ୟାନ୍ୟ ବହୁ ବିଶ୍ୱବିଦ୍ୟାଳୟରେ ଅନୁବାଦ ଇଂରାଜୀ ସାହିତ୍ୟ ପାଠ୍ୟକ୍ରମର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ବିଧୁଭୂଷଣ ଦାସଙ୍କ ଦୂରଦର୍ଶିତାର ବହୁ ଉଦାହରଣ ମୁଁ ଦେଇପାରେ ।

ଇଂରାଜୀ ସାହିତ୍ୟ ବ୍ୟତୀତ ନାଟକ, ଚଳଚ୍ଚିତ୍ର, ଶିକ୍ଷା, ପ୍ରଶାସନ, ଅର୍ଥନୀତି, ଧର୍ମ ଏପରିକି ବିଜ୍ଞାନ ସମ୍ପର୍କରେ ବିଧୁଭୂଷଣ ଦାସ ଯେତେ ବହି ପଢୁଥିଲେ ଓ ଯେତେ ତଥ୍ୟ ଜାଣିଥିଲେ, ତାହା ତାଙ୍କୁ ବ୍ୟକ୍ତିଗତ ଭାବରେ ଜାଣି ଥିବା ଅନେକେ କଳ୍ପନା କରିପାରିବେନାହିଁ । ସେ ଥିଲେ ଏକ ଜୀବନ୍ତ ଜ୍ଞାନକୋଷ । ଯେ କୌଣସି ଯୁଗରେ ତାଙ୍କ ଭଳି ପ୍ରଜ୍ଞାପୁରୁଷ ଯଥାର୍ଥରେ ବିରଳ ।

୧୯୬୭ରେ ବିଧୁଭୂଷଣ ଦାସଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ହେଲା । ମୁଁ ଓ ମୋ ସ୍ତ୍ରୀ ତାଙ୍କୁ ପୁରୀ ସର୍କିଟ ହାଉସ୍‌ଠାରେ ଭେଟିଲୁ ଗୋଟିଏ କଲେଜରେ ପୋଷ୍ଟିଂ କରିବା ପାଇଁ । ସେତେବେଳେ ସେ ଥିଲେ ଉଚ୍ଚଶିକ୍ଷା ନିର୍ଦ୍ଦେଶକ । ଆଗରୁ ଶୁଣିଥିଲି, ସେ ଅତ୍ୟନ୍ତ ଗମ୍ଭୀର ବ୍ୟକ୍ତି; ଆଦବ୍ କାଇଦାରେ ପୁରାପୁରି ସାହେବ । ତାଙ୍କ ସହିତ କିପରି କଥାବାର୍ତ୍ତା କରିବୁ, ସେଥିପାଇଁ ପ୍ରସ୍ତୁତ ହୋଇ ସନ୍ତର୍ପଣରେ ତାଙ୍କ ନିକଟରେ ପହଞ୍ଚିଲୁ ।

ଆମର ପୋଷ୍ଟିଂ ଗୋଟିଏ କଲେଜରେ କରିଦେବେ ବୋଲି ସେ ପ୍ରତିଶ୍ରୁତି ଦେଲେ । କିନ୍ତୁ ଆମ ସହିତ ଆଲୋଚନା କଲେ ପ୍ରାୟ ଦେଢ଼ଘଣ୍ଟା- ସାହିତ୍ୟ, ଅର୍ଥନୀତି, ରାଜନୀତି ସମ୍ପର୍କରେ । ସେହିଦିନ ହିଁ ମୁଁ ତାଙ୍କର ଜଣେ ଛାତ୍ର ପାଲଟି ଗଲି । ଗତ ତିଶିଶ ବର୍ଷ ମଧ୍ୟରେ ମୁଁ ତାଙ୍କର ଜଣେ ସାଧାରଣ ଛାତ୍ର ହୋଇ ରହି ଆସିଛି । ଯେତେବେଳେ ଯେଉଁ ସମସ୍ୟାର ସମାଧାନ ପାଇଁ ତାଙ୍କର ପରାମର୍ଶ ଲୋଡିଛି, ମୋତେ ସାହାଯ୍ୟ କରିବାରେ ସେ କେବେ ପରାଙ୍ମୁଖ ହୋଇନାହାନ୍ତି । ଆପାତତଃ ଗମ୍ଭୀର ଅଥଚ ଅତ୍ୟନ୍ତ ବନ୍ଧୁବତ୍ସଳ, ଛାତ୍ରବତ୍ସଳ, ସ୍ନେହୀ ବ୍ୟକ୍ତି; ଆପାତତଃ ରକ୍ଷଣଶୀଳ, ପରମ୍ପରାବାଦୀ, ଅଥଚ ଅତ୍ୟନ୍ତ ପ୍ରଗତିଶୀଳ, ଦୂରଦର୍ଶୀ ବିଧୁଭୂଷଣ ଦାସ ।

ତାଙ୍କ ତିରୋଧାନ ପରେ ମଧ୍ୟ ମୁଁ ନିଜକୁ ନିଃସଙ୍ଗ ମନେ କରୁନାହିଁ- କାରଣ ମୁଁ ଅନୁଭବ କରୁଛି, ସେ ମୋ ନିକଟରେ ହିଁ ଅଛନ୍ତି; ଯେ କୌଣସି ସମସ୍ୟାରେ ତାଙ୍କର ପରାମର୍ଶ ଲୋଡିଲେ ସେ ମୋତେ କେବେ ନିରାଶ କରିବେ ନାହିଁ। ତାଙ୍କର ଆଶୀର୍ବାଦରୁ ସେ କେବେ ବଞ୍ଚିତ କରିବେ ନାହିଁ ତାଙ୍କର ଛାତ୍ରକୁ ।

ଇଂରାଜୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର- ୭୫୧୦୦୪



# ବିରଳ ବ୍ୟକ୍ତିତ୍ୱ

**ଏ.କେ.ପି.ସି. ସ୍ୱାଇଁ**

ଦୀର୍ଘ ସାଢ଼େ ଚାରି ଦଶକ ତଳର କଥା । ରେଭେନ୍‌ସା ମହାବିଦ୍ୟାଳୟର ପୂର୍ବ ଛାତ୍ରବାସ ରୁମ୍ ନମ୍ବର ଛବିଶି । ମୁଁ ଓ ମୋର କେତେକ ପ୍ରଥମ ବର୍ଷ ସହପାଠୀ ଆଲୋଚନାରେ ମଗ୍ନ । ଆମେ ସମସ୍ତେ ମଫସଲ ବିଦ୍ୟାଳୟରୁ ମାଟ୍ରିକ ପାସ୍ କରି ରେଭେନ୍‌ସା କଲେଜ୍‌ରେ ନାମ ଲେଖାଇଥାଉ । କଟକ ସହରର ସ୍ୱନାମଧନ୍ୟ ରେଭେନ୍‌ସା କଲେଜର ଛାତ୍ର ଓ ପୂର୍ବଛାତ୍ରାବାସର ଅନ୍ତେବାସୀମାନଙ୍କ ସହିତ ଖାପଖୁଆଇ ଚାଲିବାକୁ ଟିକିଏ ଅସୁବିଧା ହେଉଥାଏ । ସକାଳ ସାଢ଼େ ନଅଟା ବେଳ । ଏହି ସମୟରେ ଆବିର୍ଭାବ ହେଲେ ଆମର ତତ୍ତ୍ୱାବଧାରକ ବିଧୁବାବୁ । ଗୁରୁଗମ୍ଭୀର ସୌମ୍ୟମୂର୍ତ୍ତି । ଅଜଣା ଭୟରେ ଆମେ ସମସ୍ତେ ଆତଙ୍କିତ । ଆମର ଦୋଷ- ଏକ ଗୁରୁତ୍ୱପୂର୍ଣ୍ଣ ଛାତ୍ରାବାସର ମିଟିଂରେ ଅନୁପସ୍ଥିତି । ତା’ ପରେ ଚାଲିଲା ପ୍ରଚ୍ଛନ୍ନ ତାଗିଦ୍‌ଭରା ଗୁରୁଗମ୍ଭୀର ଉପଦେଶ । ଛାତ୍ରାବାସର ମିଟିଂରେ ଭବିଷ୍ୟତରେ ଅନୁପସ୍ଥିତ ରହିଲେ ଆମକୁ ଛାତ୍ରାବାସ ଛାଡିବାକୁ ପଡିବ । ଆମେ ସମସ୍ତେ ତଟସ୍ଥ । ସେହିଦିନଠାରୁ ମୁଁ ଓ ମୋର ବନ୍ଧୁମାନେ କୌଣସି ମିଟିଂରେ ଅନୁପସ୍ଥିତ ରହୁ ନଥିଲୁ ।

ଆମକୁ ଇଂରାଜୀ ଶିକ୍ଷା ଦେଉଥିଲା ବେଳେ ମଧ ସେ ତାଙ୍କର ସେଇ ତୀବ୍ର ଆଖି ଦୁଇଟାରେ ଶ୍ରେଣୀର ସମସ୍ତଙ୍କୁ ଶୃଙ୍ଖଳା ସହିତ ପାଠରେ ମନୋନିବେଶ କରିବାକୁ ସଙ୍କେତ ଦେଇ ଶିକ୍ଷାଦେବା ଆରମ୍ଭ କରୁଥିଲେ । ବିଧୁବାବୁଙ୍କର ଆଖିଦୁଇଟା ଛାତ୍ରମାନଙ୍କ ମଧରେ ଭୟ ସଂଚାର କରୁଥିଲେ ମଧ ତାଙ୍କର ହୃଦୟ ତୁଳାଠାରୁ ଅଧିକ ନରମ ଥିଲା । ବିଧୁବାବୁଙ୍କ ବିରଳ ବ୍ୟକ୍ତିତ୍ୱରୁ ବହୁତ ଶିଖିବାର ଅଛି ।

ଚେୟାରମ୍ୟାନ
ପି.ଜି.କାଉନସିଲ୍
ଉତ୍କଳ ବିଶ୍ୱବିଦ୍ୟାଳୟ

# ଶ୍ରଦ୍ଧାଞ୍ଜଳି

*ଚନ୍ଦ୍ରମଣି ନାୟକ*

ଅଧ୍ୟାପକ ବିଧୁଭୂଷଣ ଦାସ ଥିଲେ ଜଣେ ଯଶସ୍ୱୀ ପୁରୁଷ । ପ୍ରଖ୍ୟାତ ଶିକ୍ଷାବିତ୍, ଦକ୍ଷ ପ୍ରଶାସକ, ସୁଲେଖକ ଏବଂ ସୁବକ୍ତା ଭାବେ ତାଙ୍କର ପ୍ରସିଦ୍ଧି ଥିଲା ରାଜ୍ୟ ସ୍ତରରେ ଏବଂ ଜାତୀୟ ସ୍ତରରେ । ଫିଲ୍ମ ସେନସର ବୋର୍ଡର ସଭ୍ୟଭାବେ ସିନେମାର ଅଶ୍ଳୀଳ, ଅରୁଚିକର ଏବଂ ହିଂସ୍ର ଅଭିନୟ ବିରୋଧରେ ସେ ବଳିଷ୍ଠ ଯୁକ୍ତି ଦେଖାଇ ଏହାର ଦୂରୀକରଣ ଦିଗରେ ଯେଉଁ ଉଦ୍ୟମ କରିଥିଲେ, ତାହା ସାରା ଦେଶରେ ଆଦୃତ ହୋଇଥିଲା । ଅବସର ପରେ ସେ ବହୁ ସମୟ କଟାଉଥିଲେ ଅଧ୍ୟୟନ ଏବଂ ପୂଜା ଉପାସନାରେ ।

ସେଥିଲେ ରାଜ୍ୟ ପେନ୍‌ସନ ମହାସଂଘର ସଭାପତି ୧୯୮୯ରୁ ୧୯୯୨ । ମୁଁ ସାଧାରଣ ସମ୍ପାଦକ ଥିଲି । ଅନିଚ୍ଛା ସତ୍ତ୍ୱେ ଏ ପଦବୀ ଗ୍ରହଣ କରି ସେ ବହୁ ଅସୁବିଧାରେ ସମ୍ମୁଖୀନ ହୋଇଥିଲେ । ଭୁବନେଶ୍ୱର ଶାଖା ରାଜ୍ୟ ମହାସଂଘ ସହ ମିଶିଯାଇ ପରେ ଏକ ଦେଓ୍ୱାନି ମକଦ୍ଦମା କରି ଏହି ମିଶ୍ରଣ ଆଇନସମ୍ମତ ନୁହେଁ ବୋଲି ଦାବୀ କରିଥିଲେ । ମୁନସଫ କୋର୍ଟରେ ଏ କେଶ୍ ତିନିବର୍ଷ ଚାଲିଥିଲା । ସେ ବିନା ଦ୍ୱିଧାରେ ସବୁ ତାରିଖରେ କୋର୍ଟକୁ ଆସୁଥିଲେ ସହୀଦ ନଗର ବାସଭବନରୁ । ତାଙ୍କ ସହ ଲେଫ୍‌ଟନାଣ୍ଟ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, ଅବସର ପ୍ରାପ୍ତ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଘନଶ୍ୟାମ ଦାସ ଏବଂ ମୁଁ ଆସୁଥିଲୁ । ପକ୍ଷମାନଙ୍କ ପାଇଁ ଉଦ୍ଦିଷ୍ଟ ବେଞ୍ଚରେ ଘଣ୍ଟାଘଣ୍ଟା ଧରି ଧୈର୍ଯ୍ୟର ସହ ବସି ରହିବା ଆମକୁ ବିସ୍ମିତ କରିଥିଲା । ଯେଉଁ ଦିନ କେଶ୍‌ର ଜଜ୍‌ମେଣ୍ଟ ବାହାରିଲା ଏବଂ ରାଜ୍ୟ ମହାସଂଘର ବିଜୟ ହେଲା, ସେ ନିଜ ସମ୍ପର୍କ ରାଜ୍ୟ ମହାସଂଘରୁ ଛିନ୍ନ କଲେ । ତାଙ୍କର ଏହି କଷ୍ଟସ୍ୱୀକାର ଏବଂ ଉଦାରତା ପାଇଁ ରାଜ୍ୟ ସଂଘ ଚିର ଋଣୀ । ତାଙ୍କର ଅମର ଆତ୍ମାପ୍ରତି ଆମେ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ସମ୍ପାଦକ
ଅବସରପ୍ରାପ୍ତ ଓଡ଼ିଶା ସରକାରୀ କର୍ମଚାରୀ ସଂଘ
ଭୁବନେଶ୍ୱର -୭୫୧୦୦୭



# ସ୍ମରଣୀୟ ଅଧ୍ୟକ୍ଷ ବିଧୁଭୂଷଣ ଦାସ

*ରବୀନ୍ଦ୍ର କୁମାର ପ୍ରହରାଜ*

ମୋର ଏକାନ୍ତ ସୌଭାଗ୍ୟବଶତଃ ମୁଁ ରେଭେନ୍‌ସା ସାନ୍ଧ୍ୟ ମହାବିଦ୍ୟାଳୟରେ ଅଧ୍ୟାପନା କଲାବେଳେ ମାତ୍ର ଛଅମାସ ତାଙ୍କୁ ଅଧ୍ୟକ୍ଷ ଭାବରେ ପାଇଥିଲି । ରେଭେନ୍‌ସା କଲେଜ୍‌ର ଛାତ୍ର ନଥିବାରୁ ମୁଁ ତାଙ୍କର ଶ୍ରେଣୀ-ଗୃହ-ଶିକ୍ଷାଦାନର ପ୍ରତ୍ୟକ୍ଷ ଅନୁଭୂତି ମୋର କେବେ ଘଟିନଥିଲା । ମାତ୍ର ସତୀର୍ଥମାନଙ୍କଠାରୁ ତାଙ୍କ ସମ୍ପର୍କରେ ଯାହା ଶୁଣିଥିଲି, ସେଥିରୁ ତାଙ୍କ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ମନରେ ପୋଷଣ କରି ଆସୁଥିଲି । ତାଙ୍କୁ ସାକ୍ଷାତ କରି ଏବଂ ତାଙ୍କର ଯତ୍‌କିଞ୍ଚିତ କ୍ଷୀଣ ସାନ୍ନିଧ୍ୟ ଲାଭ କରି ମୋର ସେ ଧାରଣା ଯଥେଷ୍ଟ ବଳବତ୍ତର ହୋଇଯାଇଥିଲା । ସେ ମୋ ଦୃଷ୍ଟିରେ ଥିଲେ ବହୁଶାସ୍ତ୍ରଦର୍ଶୀ ବିଚକ୍ଷଣ ବିଦ୍ୱାନ୍ । ବିଦ୍‌ବତ୍ତା ଓ ତଦ୍‌ବିଦତାରେ ସେ କାହିଁ କେତେ ଉଚ୍ଚତାରେ ପହଞ୍ଚିଥିଲେ ଯେ ତାହା ମୋ ପକ୍ଷରେ କଳନୀୟ ନଥିଲା । ସାହିତ୍ୟ କ୍ଷେତ୍ରରେ ସେ ସ୍ୱଭାବତଃ ବିଶ୍ୱକୋଷୀୟ ପାଣ୍ଡିତ୍ୟ ଅର୍ଜନ କରିଥିଲେ ହେଁ ଧର୍ମ, ବିଜ୍ଞାନ, ଚଳଚ୍ଚିତ୍ର ଇତ୍ୟାଦି କ୍ଷେତ୍ରରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ତାଙ୍କୁ ଜଣେ ଦିଶାରୀ ଭାବରେ ପରିଚିତ କରାଇଥିଲା । ଶିକ୍ଷା-ସଂଗଠନରେ ତାଙ୍କର ମାର୍ଗଦର୍ଶୀ ମୌଳିକ ପରିକଳ୍ପନା ଯୋଗୁଁ ସେ ଥିଲେ ଅଗ୍ରବରେଣ୍ୟ ।

ତାଙ୍କ ଭଳି ଏକ ବହୁବାଞ୍ଛିତ ତୁଙ୍ଗ ବ୍ୟକ୍ତିଙ୍କୁ ଅଧ୍ୟକ୍ଷ ଭାବରେ ପାଇ ଯେଉଁ ଉତ୍ସାହ ଆମକୁ ମିଳିଥିଲା, ତା'ର ଅବଧି ଥିଲା ମାତ୍ର ଛଅମାସ । ତାଙ୍କର ପ୍ରେରଣାଦାୟୀ ନିର୍ଦ୍ଦେଶ, ଉପଦେଶ ଓ କର୍ମଧାରା ମାଧ୍ୟମରେ ସେ ଆମ ଭିତରେ ରଖିଗଲେ ଅବିସ୍ମରଣୀୟ ଆଦର୍ଶ । ଆଜି ବି ଚଳଚ୍ଚିତ୍ର ଭଳି ସେସବୁ ମନ-ଦିଗନ୍ତରେ ଉଦ୍‌ଭାସି ଉଠେ । ସେ ଅଧ୍ୟକ୍ଷ ଭାବରେ ଯୋଗ ଦେବାର ଦିନେ ଅଧେ ବିତିଥାଏ । କଲେଜ୍‌ର ବାତାବରଣରେ କେତେକ ସଦ୍ୟ ପରିବର୍ତ୍ତନ ଆମ୍ଭମାନଙ୍କୁ ଅଭିଭୂତ ତଥା ସଚ୍ଚାଗ କରିଦେଲା । କଲେଜ୍‌ର ମୁଖ୍ୟ ସୌଧରୁ କନିକା ଲାଇବ୍ରେରୀ ପର୍ଯ୍ୟନ୍ତ ସୁବିସ୍ତୃତ ଘାସ ପଡିଆ ମଝିରେ ପାଦଚଲା ରାସ୍ତା ସବୁଜ ପିଠିରେ ଆଞ୍ଚୁଡା ଦାଗ ପରି ବଡ ବିଶ୍ରୀ ଦିଶୁଥିଲା । ସେଦିନ ଦେଖିଲା ବେଳକୁ ସେ ଏକପଦୀ ସରଣୀର ଆରମ୍ଭ ଓ ଶେଷରେ ''KEEP OFF THE GRASS'' ଶୀର୍ଷକ-ସମ୍ବଳିତ କଳା ଟିଣ ପଟା ଝୁଲୁଛି । ମୁଁ ଲକ୍ଷ୍ୟ କରି ଦେଖିଛି, ମାତ୍ର ଗୋଟିଏ ମାସ ଭିତରେ ସେ ଧଳା ଦାଗ ନିଶ୍ଚିହ୍ନ ହୋଇ କ୍ରମଶଃ ସବୁଜ ପାଲଟିଗଲା ।

ସେ ଅଧ୍ୟକ୍ଷ ହେବା ପରେ ପରେ ପ୍ରାୟ ପ୍ରତ୍ୟେକ ଦିନ ଆମେ କଲେଜ୍‌ରେ ପହଞ୍ଚିବା ବେଳକୁ ଆମକୁ ମିଳେ ତାଙ୍କର ଦିବା ଭାଗରେ ଶ୍ରେଣୀ ପରିଦର୍ଶନଜନିତ ଭୀତି ସଂଚାରୀ ସମାଚାର । ଶ୍ରେଣୀ ଘଣ୍ଟା ବାଜିବା ମାତ୍ରେ କାଳ ବିଳମ୍ବ ନକରି ଯେ ଯାହା ଶ୍ରେଣୀକୁ ଯଥା ସମ୍ଭବ ଶୀଘ୍ର ଚାଲିଯିବା ଲାଗି ତାହା ଥିଲା ବେଶ୍ ପ୍ରଭାବଶାଳୀ ଚେତାବନୀ । ଅଧ୍ୟକ୍ଷ ମହୋଦୟ ସ୍ୱୟଂ ସାନ୍ଧ୍ୟ କଲେଜ୍‌କୁ ଆସିବେ ଏବଂ ଆମ୍ଭମାନଙ୍କର କାର୍ଯ୍ୟକଳାପ ପ୍ରତ୍ୟକ୍ଷ ଅନୁଧ୍ୟାନ କରିବେ, ଏ ଆଶା ଭରସା ପ୍ରାୟତଃ ଆମର ନଥିଲା । କିନ୍ତୁ ବିଧୁବାବୁ ଥିଲେ ସ୍ୱତନ୍ତ୍ର ଉଭୟ ଜ୍ଞାନ ଓ କର୍ମରେ । ସେଦିନ ପରୀକ୍ଷା ଫର୍ମ ପୂରଣ କାର୍ଯ୍ୟ ଚାଲୁଥାଏ । ମୁଁ ଏକାକୀ ଛାତ୍ର-କମନ୍‌ରୁମ୍‌ରେ ବସି ସେଗୁଡିକୁ ଯାଞ୍ଚ କରୁଥାଏ । ମୋତେ ଘେରିଥାଆନ୍ତି ଶତାଧିକ ଛାତ୍ର । କାର୍ଯ୍ୟଟି କିଭଳି ଯଥାସମ୍ଭବ ଶୀଘ୍ର ଓ ନିର୍ଭୁଲ ଭାବେ ସମାହିତ ହେବ, ସେଥିପାଇଁ ମୁଁ ନିବିଷ୍ଟ ଚିତ୍ତରେ ତଳକୁ ଚାହିଁ କାମ କରି ଚାଲିଥାଏ । ହଠାତ୍ ମୋ ଚାରିପାଖରେ ମୃଦୁ କୋଳାହଳ ନୀରବିତ ହୋଇଯିବାରୁ ମୁଁ କିଛି ଅସ୍ୱାଭାବିକତାର ଆଶଙ୍କା କରି ଉପରକୁ ମୁଣ୍ଡ ଉଠାଇ ଆଗକୁ ଚାହିଁବା କ୍ଷଣି ମୋର ଦୃଷ୍ଟିରେ ପଡିଗଲା  ବିଧୁବାବୁଙ୍କର ସେଇ ଚଷମାମଣ୍ଡିତ ଦୁଇ ଉଜ୍ଜ୍ୱଳ ଆଖି । ସେ ଅନ୍ତର୍ଭେଦୀ କର୍ତ୍ତୃତ୍ୱ ସୁଲଭ ପ୍ରଜ୍ଞାଦୀପ୍ତ ଅନନ୍ୟ ଚାହାଣୀ ମୋର ଏବେ ବି ପାଶୋରି ଯାଇନାହିଁ । ମୋର ସସମ୍ଭ୍ରମ ପ୍ରଣତି ଓ ତାଙ୍କର ଆଦେଶ ଏକାଠି ମିଶିଗଲା । ପିଲାମାନଙ୍କୁ ଧାଡିରେ ଠିଆ କରାଇ ଯାଞ୍ଚ କାର୍ଯ୍ୟ ଚଳାଇ ଯିବାକୁ ଇଂରେଜିରେ ନିର୍ଦ୍ଦେଶ ଦେଇ ସେ ଅପସରି ଗଲେ ନିହାତି ଧୀର ଭାବରେ । ସେତେବେଳ ତାଙ୍କର ପରିଧାନ ଥିଲା ଅପେକ୍ଷାକୃତ ଅନୁଜ୍ଜ୍ୱଳ ଏକ ଅଧା ହାୱାଇ ସାର୍ଟ । ମୋର ସେଦିନର କର୍ତ୍ତବ୍ୟ ସଂପାଦନରେ ସମସ୍ତ ଗଳଦ୍‌ଘର୍ମତା ସାର୍ଥକ ହେଲା ପରି ମୋତେ ଲାଗିଥିଲା ।

ଆଉ ଦିନେ । ସେତେବେଳକୁ ସମସ୍ତ ଅଧ୍ୟାପକ ଲେସନ୍ ପ୍ଲାନ୍ ଓ ଲେସନ୍ ନୋଟ୍ ପ୍ରସ୍ତୁତ କରିବାକୁ ଦୃଢ଼ ଆଦେଶ ଜାରି ହୋଇଥାଏ । ଆମ୍ଭେମାନେ ସେ ଦିଗରେ କିପରି କ'ଣ କରିବୁ, ଏ ସଂକ୍ରାନ୍ତରେ ପରସ୍ପର ବିଚାରବିମର୍ଶ କରୁଥାଉ । ଅଧ୍ୟକ୍ଷ ଆମ କମନ୍‌ରୁମ୍‌କୁ ପଶି ଆସିଲେ । ଭାଗ୍ୟକୁ ମୋର ସେତେବେଳେ କ୍ଲାସ ନଥାଏ । ପ୍ରଥମେ ଆମର କୁଶଳ ଜିଜ୍ଞାସା କରି ତାଙ୍କ ପାଖକୁ ଲାଗି ବସିଯିବା ଲାଗି ସେ ନିର୍ଦ୍ଦେଶ ଦେଲେ ଏବଂ ତାହା ପାଳିତ ହେବାରୁ ମୃଦୁହାସ୍ୟ ମୁହଁରେ ଖେଳାଇ ସେ ଗୁରୁ ଗମ୍ଭୀର ସ୍ୱରରେ ଆମକୁ ଇଂରେଜିରେ ଯାହା କହିଲେ ତା'ର ଓଡ଼ିଆ ଭାଷାନ୍ତର ହେବ ଏହିପରି: ''ମୋ ପ୍ରିୟ ବନ୍ଧୁଗଣ, ଆପଣମାନେ ମୋତେ ଆପଣଙ୍କର ଅଧ୍ୟକ୍ଷ ଭାବରେ ନୁହେଁ, ଜନୈକ ବରିଷ୍ଠ ସହକର୍ମୀ ଭାବରେ ଗ୍ରହଣ କରନ୍ତୁ । ମୁଁ ଅଧ୍ୟକ୍ଷ ହୋଇପାରେ, ମାତ୍ର ସର୍ବାଗ୍ରେ ମୁଁ ଆପଣମାନଙ୍କର ବୟୋଜ୍ୟେଷ୍ଠ ସହକର୍ମୀ । ଅଧ୍ୟାପନା କ୍ଷେତ୍ରରେ ମୋର ଯାହା ଅନୁଭୂତି, ମୁଁ ସେହି ଦୃଷ୍ଟିରୁ ଆପଣମାନଙ୍କୁ କହୁଛି, ଶ୍ରେଣୀ କକ୍ଷରେ ପ୍ରବେଶ

କରିବା ପୂର୍ବରୁ ସବୁମନ୍ତେ ପ୍ରସ୍ତୁତ ହୋଇ ଯାଆନ୍ତୁ । ସେଠାରେ ଯେପରି ଇଚ୍ଛା ସେପରି କାର୍ଯ୍ୟ ସମାପ୍ତ କରି ଦେଇ ରକ୍ଷା ପାଇଯିବେ ବୋଲି କେବେ ବି ଭାବନ୍ତୁ ନାହିଁ । ମନେ ରଖନ୍ତୁ, ଶ୍ରେଣୀ କକ୍ଷରେ ଶହ ଶହ ଯୋଡା ଆଖି ଓ କାନ ଆପଣଙ୍କ ସେଠାକାର ଗତିଭଙ୍ଗୀ ପ୍ରତି ଉନ୍ମୁଖ ହୋଇ ରହିଛି । ଆପଣଙ୍କ ସମ୍ପର୍କରେ ସେହିଠାରୁ ବାଜି ଉଠିବ ଶହ ଶହ ମାଇକ୍ରୋଫୋନ୍ ଛାତ୍ରମାନଙ୍କ ତୁଣ୍ଡରେ । ସେଥିପାଇଁ ଶ୍ରେଣୀ ଶିକ୍ଷାଦାନ ଲାଗି ପ୍ରାକ୍ ପ୍ରସ୍ତୁତି ଅପରିହାର୍ଯ୍ୟ । ଆପଣମାନଙ୍କର ବ୍ୟକ୍ତିତ୍ୱ, କୃତିତ୍ୱ, ଆଦର୍ଶ ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ ଓ ପ୍ରଭାବିତ କରିବା ସବୁମନ୍ତେ ଆଶା କରାଯାଏ । ଦେଶ, ଜାତି ଓ ସମାଜକୁ ଆପଣମାନେ ଏହି ପନ୍ଥାରେ ଆପଣଙ୍କର ଅବଦାନ ଦେଇପାରିବେ । ଏହା ନହେଲେ ସବୁକିଛି ନିଷ୍ଫଳ ପ୍ରହସନରେ ପରିଣତ ହେବା ଅବଶ୍ୟମ୍ଭାବୀ ।'' କହିବା ବାହୁଲ୍ୟ, ସେହିଦିନଠାରୁ ଅଧ୍ୟାପନା ବୃତ୍ତିରୁ ଅବସର ନେବା ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଆଦେଶ ଥାଉ ବା ନଥାଉ ବର୍ଷ ଆରମ୍ଭରୁ ଲେସନ ପ୍ଲାନ ଓ ଲେସନ ନୋଟ୍ ପ୍ରସ୍ତୁତିକୁ ମୁଁ ଅଗ୍ରପ୍ରାଧାନ୍ୟ ଦେଇ ଆସିଅଛି ।

ମୁଁ 'ରେଭେନ୍‌ସା'ରୁ ବିଦାୟ ନେବା ପରେ ଯାଜପୁର ଓ ଅନୁଗୁଳ କଲେଜରେ ଭିନ୍ନ ଅବକାଶରେ ତାଙ୍କୁ ଭେଟିଛି । ଅନୁଗୁଳ କଲେଜ୍‌ରେ ତାଙ୍କ ସହ ମୋ ସାକ୍ଷାତ କିଞ୍ଚିତ୍ ବ୍ୟକ୍ତିଗତ ହୋଇ ପଡିଥିବାରୁ ଭୁଲି ହେବ ନାହିଁ । ସେ ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରେ ବସିଥାଆନ୍ତି, ମୁଁ ତାଙ୍କୁ ସାକ୍ଷାତ କଲି । ହସି ହସି ମୋ ସନ୍ତାନ ସନ୍ତତିଙ୍କ ବିଷୟ ଜିଜ୍ଞାସା କରିବାରୁ ମୁଁ କହିଲି, ''ସାର୍, ମୁଁ ସେ ଦୃଷ୍ଟିରୁ ଅଭାଗା । ମୋର କେବଳ ପାଞ୍ଚୋଟି କନ୍ୟା ।'' ସେ ଛଳକୋପ କରି କହିଲେ, 'କ'ଣ କହିଲୁ, ଆଉ ଥରେ କହିଲୁ, ମୁଁ ତୋତେ ଚାକିରୀରୁ ବାହାରି କରିଦେବି । ଝିଅ ପାଇଁ ମନ ଦୁଃଖ କରୁଛୁ ? କାହିଁକି ? ମୁଁ ଆଜି ତୋତେ କହୁଛି, ମୁଁ ତାକୁ ଚାକିରୀ ଦେବି ।'' ତାହାତ ସମ୍ଭବ ହେଲା ନାହିଁ, ଝିଅ ବି.ଏ. ପଢ଼ିବା ଆଗରୁ ବିଭା ହୋଇ ଗଲା; ମାତ୍ର ଏ ଅକିଞ୍ଚନ ପ୍ରତି ମହାନୁଭବ ଅଧ୍ୟକ୍ଷଙ୍କର (ମୁଁ ତାଙ୍କୁ ସେହି ଅଧ୍ୟକ୍ଷ ଭାବରେ ଗ୍ରହଣ କରି ଆସିଛି) ସେ ଆନ୍ତରିକତା ଭରା ସାନ୍ତ୍ୱନା ଆଉ କେବେ ଏହିଭଳି କାହାଠାରୁ ପାଇଥିବା ମୋର ମନେ ନାହିଁ ।

ଶେଷ ଥରର ସାକ୍ଷାତ ପାଇଥିଲି ଭୁବନେଶ୍ୱର ବିମାନ ବନ୍ଦରରେ । ପୁଅକୁ ଛାଡିବାକୁ ସେ ସସ୍ତ୍ରୀକ ଯାଇଥାଆନ୍ତି । ଲେଖା ଲେଖି କଥା ପଚାରିଲେ, ଘରକୁ ଯାଇ ଭେଟିବାକୁ କହିଥିଲେ । ମୁଁ ପାରିବାରିକ ଝଂଝାଳଜନିତ ଅସ୍ୱସ୍ତିର ବଳୟରୁ ମୁକ୍ତି ପାଇଲି ନାହିଁ । ଗଙ୍ଗାକୂଳରେ ଥାଇ ତୃଷାର୍ତ୍ତ ହୋଇ ରହିଗଲି । ସାର୍ ନିଶ୍ଚିତ ଦିବ୍ୟଗତି ଲଭିଛନ୍ତି ।

# ବିଧୁ ବାବୁ: ଶିକ୍ଷା ଜଗତର ବ୍ୟର୍ଥ-ବିବେକ

**ସୁଭାଷ ଚନ୍ଦ୍ର ପଟ୍ଟନାୟକ**

ବ୍ୟର୍ଥତା ହିଁ ବିବେକର ବୈଶିଷ୍ଟ୍ୟ । ଏହି ବ୍ୟର୍ଥତା ହେତୁ ହିଁ ତାହା ବାରି ହୋଇପଡେ । ମଣିଷ ଜୀବନରେ ସଇତାନ ପ୍ରାୟ ସର୍ବଦା ହିଁ ଜୟଲାଭ କରେ, ବିବେକ ପ୍ରାୟ ସର୍ବଦା ହିଁ ବ୍ୟର୍ଥ ହୁଏ । ବ୍ୟର୍ଥ ହୁଏ, କାରଣ ଏହା ସବୁବେଳେ ଅପ୍ରିୟ ପରାମର୍ଶ ହିଁ ଦେଇଥାଏ । ଅପ୍ରିୟ ପରାମର୍ଶ ମନରୂଚକ ହୁଏ ନାହିଁ । ମାନିବ କିଏ ? ନ ମାନୁ କେହି । ବିବେକର କିନ୍ତୁ ଖାତିର ନଥାଏ । ସଦ୍ ପରାମର୍ଶ ଦେବା ହିଁ ତାର ଧର୍ମ । ସଦ୍ ପରାମର୍ଶ ଅପ୍ରିୟ ହେବା ଅସ୍ୱାଭାବିକ ନୁହେଁ । ସେଥିପାଇଁ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ପ୍ରାୟତଃ ବିବେକର କଥା ମାନେ ନାହିଁ । ରାବଣ କ'ଣ ବିଭୀଷଣଙ୍କ କଥା ମାନିଥିଲେ ? ଧୃତରାଷ୍ଟ୍ର କ'ଣ ମାନିଥିଲେ ଶ୍ରୀକୃଷ୍ଣଙ୍କ ପରାମର୍ଶ ? ଭାରତର ସ୍ୱାଧୀନତା ପରବର୍ତ୍ତୀ ସରକାର କ'ଣ ଗାନ୍ଧିଜୀଙ୍କ କଥା ଶୁଣିଲେ ? ନା ।

ଅତଏବ, ଅପ୍ରିୟ ପରାମର୍ଶ ବ୍ୟର୍ଥ ଯାଏ । ବିବେକର ପରାମର୍ଶ ଯେହେତୁ ଅପ୍ରିୟ, ସେହେତୁ ଅଧିକାଂଶତଃ ବ୍ୟର୍ଥ ହୁଏ ବିବେକ । ବ୍ୟର୍ଥ ହୋଇସାରିଲା ପରେ ହିଁ ତା'ର ବୈଶିଷ୍ଟ୍ୟ ବୁଝାପଡେ । ସଇତାନ କଥାରେ ଚାଲି ସଫଳତାର ଅନ୍ଧମୁହାଣି ଭିତରେ ବି ମଣିଷ ଅଣନିଶ୍ୱାସୀ ହୋଇ କହିଉଠେ, ''ଆହା, ବିବେକର କଥା ହେଲେ ଶୁଣିଥାନ୍ତି !'' ବ୍ୟର୍ଥ ହେଲେ ବି, ସେହି ବ୍ୟର୍ଥତାରେ ବିବେକର ଚିର-କାମ୍ୟ ସ୍ୱର ଅନାହତ ହୋଇ କେବଳ ରହିଥାଏ ତା' ନୁହେଁ, ବାରମ୍ବାର ମଣିଷ ସେହି ସ୍ୱର ଅନୁସରଣ କରିବାକୁ ଲାଗିଉଠେ ।

ଓଡ଼ିଶାର ଶିକ୍ଷା-ଜଗତରେ ଏକ କାଳଜୟୀ ଅଧ୍ୟାୟର ଅଧିକାରୀ ପ୍ରଫେସର ବି. ଦାସ- ବିଧୁବାବୁ ଏହିପରି ଏକ ବ୍ୟର୍ଥ ବିବେକ । ସମସ୍ତେ ତାଙ୍କ ସଫଳତାର କାହାଣୀ ଜାଣନ୍ତି । ମୁଁ କିନ୍ତୁ ତାଙ୍କ ବ୍ୟର୍ଥତାର ଏପରି ଏକ ଚିତ୍ର ଦେବି ଯହିଁରୁ ବୁଝାଯିବ ସେ କାହିଁକି ଏବେ ବି କାମ୍ୟ, ଏବେ ବି ଅନୁସରଣୀୟ, ଏବେ ବି ଅନୁଜୀବ୍ୟ ।

**ଅଜଣାରେ ବି ବରଦାନ**

ଆଜିକି ୩୦ ବର୍ଷ ତଳେ ସେ ଥିଲେ ଓଡ଼ିଶାର ଉଚ୍ଚଶିକ୍ଷା ବିଭାଗର ନିର୍ଦ୍ଦେଶକ । ଶିକ୍ଷା ପରିଚାଳନାରେ ସଂସ୍କାର ପାଇଁ ରାଜ୍ୟ ସରକାରଙ୍କୁ ଏକ ପତ୍ର ଲେଖି ସେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ୨୬/୧୨/୧୯୬୯ରେ ଲିଖିତ ଏହି ପତ୍ରଟିର ସଂଖ୍ୟା ଥିଲା ୫୬୫୩ । ରାଜ୍ୟ ସରକାର ଏଥିରେ ପ୍ରଦତ୍ତ ପରାମର୍ଶ ଆଂଶିକ

ମାନିଥିଲେ, ଆଂଶିକ ପ୍ରତ୍ୟାଖ୍ୟାନ କରିଥିଲେ । ମାତ୍ର ଉଲ୍ଲେଖନୀୟ ହେଉଛି ଏହା ଯେ ଶିକ୍ଷାଜଗତରୁ ବି ତାଙ୍କୁ ସହଯୋଗ ମିଳି ନଥିଲା । ଆମୋଫୋଇ- ପ୍ରସିଦ୍ଧି-ଦୀପ୍ତ ଅଧ୍ୟାପକ ବି. ରାମଚନ୍ଦ୍ର ତାଙ୍କ ପରାମର୍ଶ ଉପରେ ଅତି କଠିନ ଆକ୍ଷେପ ରଖିଥିଲେ ଗଣମାଧ୍ୟମରେ । ସରକାରୀ ନୀତିକୁ ଆକ୍ଷେପ କରି ଗଣମାଧ୍ୟମରେ ମନ୍ତବ୍ୟ ପ୍ରକାଶ କରିଥିବା ହେତୁ ଆଚରଣ ସଂହିତାର ୬ ଓ ୭ ଦଫାର ଉଲ୍ଲଂଘନ ଘଟିଥିବା ଦର୍ଶାଇ ତାଙ୍କ ବିରୋଧରେ ବିଭାଗୀୟ ଦଣ୍ଡବିଧାନ ହୋଇଥିଲା । ମାତ୍ର ଏହି ଦଣ୍ଡବିଧାନ ଭାରତୀୟ ଗଣତନ୍ତ୍ର ପାଇଁ ଅଜଣାରେ ଏକ ବରଦାନ ହୋଇଗଲା ।

ଦଣ୍ଡବିଧାନ ବିରୋଧରେ ଅଧ୍ୟାପକ ରାମଚନ୍ଦ୍ର ଓଡ଼ିଶା ହାଇକୋର୍ଟରେ ଯେଉଁ ମକଦ୍ଦମା କଲେ, ତାହା ବସ୍ତୁତଃ ବାକ୍ ସ୍ୱାଧୀନତାର ମୌଳିକ ଅଧିକାରକୁ କେନ୍ଦ୍ର କରି ଉତ୍‌ଥିତ ହୋଇଥିଲା । ILR 1971 Cuttack 1146 ରେ ରାୟ ଦେଇ, ଅଧ୍ୟାପକ ରାମଚନ୍ଦ୍ର ସରକାରୀ ନୀତିକୁ ଗଣମାଧ୍ୟମରେ ସମାଲୋଚନା କରି ଆଚରଣ ସଂହିତାର ୬ ଓ ୭ ଦଫା ଦୁଇଟିର ଉଲ୍ଲଂଘନ କରିଥିବା ହେତୁ ତାଙ୍କ ପ୍ରତି ହୋଇଥିବା ବିଭାଗୀୟ ଦଣ୍ଡବିଧାନ ଅବୈଧ ନୁହେଁ ବୋଲି କହିଥିବା ସତ୍ତ୍ୱେ ବି, ଓଡ଼ିଶା ହାଇକୋର୍ଟ ଏହି ଦୁଇଟି ଦଫାକୁ ଅସାଂବିଧାନିକ ବୋଲି ଦର୍ଶାଇ ଅସିଦ୍ଧ କରିଦେଇଥିଲେ । ସଂବିଧାନର ୧୯(୧)(କ) ଧାରା ଭାରତର ପ୍ରତ୍ୟେକ ନାଗରିକକୁ ବାକ୍ ସ୍ୱାଧୀନତାର ମୌଳିକ ଅଧିକାର ପ୍ରଦାନ କରିଥିବା ହେତୁ କୌଣସି ନାଗରିକ ସରକାରୀ କର୍ମଚାରୀ ହୋଇଥିବା ଦର୍ଶାଇ ତାଙ୍କୁ ଏହି ଧାରାର ବୈଭବରୁ କୌଣସି ଆଇନ ବା ନିୟମ ବଞ୍ଚିତ କରିପାରିବେ ନାହିଁ ବୋଲି ସ୍ପଷ୍ଟ କରିଦେଇ ଓଡ଼ିଶା ହାଇକୋର୍ଟ ଭାରତରେ ବାକ୍ ସ୍ୱାଧୀନତାର ଏକ ନୂଆ ଅଧ୍ୟାୟ ଆରମ୍ଭ କଲା । ବସ୍ତୁତଃ ଏହାପରଠାରୁ ଏ ପର୍ଯ୍ୟନ୍ତ ଏହି ବିଧି ଉପରେ ବାରମ୍ବାର ଅଧିକ ବିଶ୍ଳେଷଣ ହୋଇ, ଏହିଥିରୁ ହିଁ ତଥ୍ୟ ଜାଣିବାର ଅଧିକାର ସଂବିଧାନରେ ଲିପିବଦ୍ଧ ହୋଇନଥିଲେ ମଧ୍ୟ ଏକ ମୌଳିକ ଅଧିକାର ଭାବେ ସ୍ୱୀକୃତ ହେଲାଣି । ଆଜି ଯେ ବିଭିନ୍ନ ସରକାରୀ କର୍ମଚାରୀ ଅନ୍ୟ ଯେ କୌଣସି ନାଗରିକଙ୍କ ପରି ସରକାରୀ ନୀତିର ସମାଲୋଚନା କରି ମଧ୍ୟ ଗଣମାଧ୍ୟମରେ ମନ୍ତବ୍ୟ ପ୍ରକାଶ କରିପାରୁଛନ୍ତି, ତାହା ସମ୍ଭବ ହୋଇନଥାନ୍ତା, ଯଦି ଆଜିକି ୩୦ ବର୍ଷ ତଳେ ସୁଦୂର କଳାହାଣ୍ଡିର ଭବାନୀପାଟଣା କଲେଜରେ ଅତ୍ୟନ୍ତ କନିଷ୍ଠ ପଦମର୍ଯ୍ୟାଦାରେ ଅଧ୍ୟାପକ ଥିବା ବି. ରାମଚନ୍ଦ୍ର ଅତି ପ୍ରଚଣ୍ଡ କଣ୍ଠରେ ବିଧୁ ବାବୁଙ୍କ ପରାମର୍ଶକୁ ଆଂଶିକ ଗ୍ରହଣ କରି ରାଜ୍ୟ ସରକାର ପ୍ରଚୋଦିତ କରିଥିବା ନୀତି ଉପରେ ଆକ୍ଷେପ ବର୍ଷିନଥାନ୍ତେ । ସୁତରାଂ ଏହାହିଁ କୁହାଯାଇପାରିବ ଯେ ବିଧୁବାବୁଙ୍କ ପରାମର୍ଶକୁ ସମାଲୋଚନା କରି ଅଧ୍ୟାପକ ବି. ରାମଚନ୍ଦ୍ର ଯେଉଁ ବିଭାଗୀୟ ଦଣ୍ଡବିଧାନର ସମ୍ମୁଖୀନ ହୋଇଥିଲେ ତାହା ଭାରତର ଗଣତନ୍ତ୍ର ପାଇଁ ଅଜଣାରେ ବରଦାନ ଆଣିଦେଲା ।

କାରଣ ମତ ପ୍ରକାଶର ଅଧିକାର ଏବଂ ତଥ୍ୟ ଜାଣିବାର ଅଧିକାର ହିଁ ଗଣତନ୍ତ୍ରର ଅସଲ ଆଧାର ।

**ପରାମର୍ଶର ବୈଧତା**

ମାତ୍ର ଯେଉଁ ପରାମର୍ଶକୁ ସେ ସମାଲୋଚନା କରିଥିଲେ, ତହିଁର ବୈଧତା ଉପରେ କୌଣସି ଅଧିକ ବିଶ୍ଳେଷଣ ହେଲା ନାହିଁ । ଅଧ୍ୟାପକ ରାମଚନ୍ଦ୍ର ବାକ୍ ସ୍ୱାଧୀନତା ସପକ୍ଷରେ ହାଇକୋର୍ଟକୁ ଯାଇଥିଲେ । ବିଧୁବାବୁଙ୍କ ପରାମର୍ଶ ବିରୋଧରେ ଯାଇନଥିଲେ । ହାଇକୋର୍ଟ ମଧ୍ୟ ନିଜ ଆଡୁ ତହିଁ ଉପରେ ଦୃଷ୍ଟିପାତ କରିନଥିଲା । ଫଳରେ ବିଧୁବାବୁଙ୍କ ପରାମର୍ଶ ଯଥାର୍ଥ ଥିଲା କି ନାହିଁ, ତାହା ଚର୍ଚ୍ଚିତ ହେଲାନାହିଁ ।

ସୁତରାଂ ଆଜି, ଏହି ଅବସରରେ , ସେହି ପରାମର୍ଶ ଉପରେ ଚିନ୍ତା କରାଯାଇପାରେ । ବିଧୁବାବୁଙ୍କ ପୂର୍ବରୁ କୌଣସି ଶିକ୍ଷା ନିର୍ଦ୍ଦେଶକ ଏପରି ପରାମର୍ଶ ଦେଇନଥିଲେ, ଆଜି ପର୍ଯ୍ୟନ୍ତ କୌଣସି ପରବର୍ତ୍ତୀ ପଦାଧିକାରୀ ମଧ୍ୟ ଏପରି କୌଣସି ପରାମର୍ଶ ଦେଇ ନାହାନ୍ତି । ମାତ୍ର ଅନୁଭୂତିରୁ ଆଜି ଜଣାପଡୁଛି ଯେ, ୩୦ ବର୍ଷ ତଳେ ବିଧୁ ବାବୁ ଦେଇଥିବା ଏହି ପରାମର୍ଶ ଯଦି ବ୍ୟର୍ଥ ହୋଇଯାଇନଥାନ୍ତା, ତେବେ ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ଯେଉଁ ବିଡମ୍ବନା ଏବେ କାୟା ବିସ୍ତାର କରିଛି, ତାହା ଘଟି ନଥାନ୍ତା ।

ଏହି ଐତିହାସିକ ପତ୍ରରେ ବିଧୁବାବୁ ସମୁଦାୟ ଦୁଇଟି ପରାମର୍ଶ ଦେଇଥିଲେ । ପ୍ରଥମତଃ ରାଜ୍ୟର ଅନ୍ୟ ସମସ୍ତ ପ୍ରଶାସନିକ ପଦପାଇଁ ଅନୁଷ୍ଠିତ ହେଉଥିବା ପ୍ରତିଯୋଗିତାମୂଳକ ପରୀକ୍ଷାରେ ଅଧ୍ୟାପକ ପଦପାଇଁ ଆଗ୍ରହୀ ପ୍ରାର୍ଥୀମାନଙ୍କୁ ଅନ୍ତର୍ଗତ କରାଯାଇ ସେମାନେ ପଢ଼ାଇବାକୁ ଚାହୁଁଥିବା ବିଷୟ ସମେତ ଇଂରାଜୀ, ଓଡ଼ିଆ ଏବଂ ସାଧାରଣବିଜ୍ଞାନରେ ସେମାନଙ୍କୁ ପରୀକ୍ଷା କରାଯିବ ଓ ଉତ୍ତୀର୍ଣ୍ଣ ପ୍ରାର୍ଥୀମାନଙ୍କୁ ବିଷୟ ବିଶେଷଜ୍ଞଙ୍କ ସହାୟତାରେ ଲୋକସେବା ଆୟୁକ୍ତ ''ଇଣ୍ଟରଭ୍ୟୁ'' କରି ଚୂଡାନ୍ତ ମନୋନୟନ କରିବେ । ଦ୍ୱିତୀୟତଃ, ଉପରୋକ୍ତ ବିଧିରେ ମନୋନୀତ ହୋଇଥିବା ଜଣେ ଅଧ୍ୟାପକ ନିଜ ପଦବୀରେ ପୂର୍ଣ୍ଣତଃ ସଂସ୍ଥିତ ହେବା ପର୍ବରୁ ପ୍ରଥମେ ଏକବର୍ଷ ବ୍ୟାପୀ ''ତାଲିମ୍'' ପାଇବେ । ଏହି ଏକ ବର୍ଷର ପ୍ରଥମାର୍ଦ୍ଧ ଅତିବାହିତ ହେବ ଓଡ଼ିଶା ପ୍ରଶାସନିକ ତାଲିମ୍ ବିଦ୍ୟାଳୟରେ ଯେଉଁଠି ତାଙ୍କୁ ପ୍ରଶାସନିକ ପରିଚାଳନାର ସର୍ବନିମ୍ନ ମୌଳିକ ପଦ୍ଧତିଗୁଡିକ ଉପରେ ତଥା ଚାକିରୀ ନିୟମାବଳୀ, ବିତ୍ତ ନିୟମାବଳୀ ସମେତ ଶିକ୍ଷା ବିଭାଗର ନିୟମ କାନୁନ୍, ଏବଂ ଶିକ୍ଷାଯୋଜନାର ବୈଷୟିକ ବୈଶିଷ୍ଟ୍ୟ ଇତ୍ୟାଦି ଉପରେ ଗଭୀର ତାଲିମ ଦିଆଯିବ । ବର୍ଷର ଦ୍ୱିତୀୟାର୍ଦ୍ଧଟି ସେ ସେହି ପ୍ରଶାସନିକ ତାଲିମ ବିଦ୍ୟାଳୟରେ ଏକ ସ୍ୱତନ୍ତ୍ର ଶିକ୍ଷକମଣ୍ଡଳୀର ସହାୟତାରେ ହେଉ ବା ଟ୍ରେନିଂ କଲେଜ ଥିବା ଯେ କୌଣସି ବିଶ୍ୱବିଦ୍ୟାଳୟରେ ହେଉ, ଶିକ୍ଷା-ଦର୍ଶନ ଏବଂ ଶିକ୍ଷାଦାନ ପଦ୍ଧତିର ବୈଷୟିକ କୌଶଳ ଉପରେ ସୁଗଭୀର ତାଲିମ ପାଇବେ ।

ବର୍ଷ ଶେଷରେ ଏହି ଉଭୟବିଧି ତାଲିମ ଉପରେ ମଧ୍ୟ ତାଙ୍କୁ ପରୀକ୍ଷା କରାଯିବ ଓ ତହିଁରୁ ଉତ୍ତୀର୍ଣ୍ଣ ହେଲେ ତାଙ୍କୁ ଅଧ୍ୟାପକ ଭାବେ ପୂର୍ଣ୍ଣତଃ ସଂସ୍ଥିତ କରାଯିବ । ଏଥିପାଇଁ ଅଧିକ ସୁଯୋଗ ଦେବାକୁ ଆଉ ଏକ ଅତିରିକ୍ତ ବର୍ଷ ମଧ୍ୟ ଶିକ୍ଷା-ନବିଶ-ବର୍ଷ ଭାବେ ମନୋନୀତ ଅଧ୍ୟାପକମାନଙ୍କୁ ଉପଲବ୍ଧ ହେବ ବୋଲି ଏହି ପରାମର୍ଶରେ ପ୍ରସ୍ତାବିତ ହୋଇଥିଲା । ରାଜ୍ୟ ସରକାର ପ୍ରଥମ ପରାମର୍ଶର ଫାଳେ ମାନିଲେ । ଅନ୍ୟ ପ୍ରଶାସନିକ ପଦ ପ୍ରାର୍ଥୀମାନଙ୍କସହ ଅଧ୍ୟାପକ ପଦ ପ୍ରାର୍ଥୀମାନେ ସମତାଳରେ ପ୍ରତିଯୋଗିତା କରିବେ ବୋଲି ପ୍ରଥମ ପରାମର୍ଶରେ ଯେଉଁ ପ୍ରସ୍ତାବ ଦିଆ ହୋଇଥିଲା, ତାକୁ ଏବଂ ଦ୍ୱିତୀୟ ପରାମର୍ଶଟିକୁ ସାମଗ୍ରିକ ଭାବେ ପ୍ରତ୍ୟାଖ୍ୟାନ କରିଦେଲେ । ଅମଲାତନ୍ତ୍ରର ଷଡଯନ୍ତ୍ର ହେତୁ ଏହା ଘଟିଥିଲା ।

ଯଦି ଏହି ସୁଦୂରପ୍ରସାରୀ ପରାମର୍ଶକୁ ସମ୍ମାନ ଦିଆଯାଇଥାଆନ୍ତା, ତେବେ ଅଣଶିକ୍ଷାବିତ୍‌ମାନଙ୍କ ହାତରେ ଶିକ୍ଷା ବିଭାଗ ଆଜି ଯେପରି କ୍ରୀଡା-ପୁତ୍ତଳିକା ହୋଇ ପଡିରହିଛି, ସେପରି ହୋଇନଥାନ୍ତା କି ଶିକ୍ଷା ପରିଚାଳନାରେ ଯେଉଁ ସମସ୍ତ ବିଶୃଙ୍ଖଳା ଆଜି ଅଙ୍ଗେ ନିଭାଇବାକୁ ପଡୁଛି, ତାହା ଘଟି ନଥାନ୍ତା । ଶିକ୍ଷା ବିଭାଗର ଶାସନ ସଚିବ ସମେତ ଶିକ୍ଷା-ସଚିବାଳୟର ସମସ୍ତ ଗୁରୁତ୍ୱପୂର୍ଣ୍ଣ ପଦରେ କେବଳ ଅଧ୍ୟାପକମାନେ ହିଁ ଥାଆନ୍ତେ, କାରଣ ପ୍ରଶାସନର କୌଣସି ଦିଗରେ ସେମାନଙ୍କର ତାଲିମ ଅନ୍ୟ କୌଣସି ପ୍ରଶାସନିକ ପଦାଧିକାରୀଙ୍କଠାରୁ ଊଣା ହୋଇନଥାନ୍ତା । ଆଇ.ଏ.ଏସ୍. ଏବଂ ଓ.ଏସ.ଏସ୍. ଅଫିସରମାନେ ସେତେବେଳେ ଏହି ଗୁରୁତ୍ୱପୂର୍ଣ୍ଣ ବିଭାଗକୁ ହାତଛଡା ନକରିବା ପାଇଁ ବିଧୁବାବୁଙ୍କ ଏହି ପରାମର୍ଶକୁ ପ୍ରତିରୋଧ କରିଥିଲେ ଏବଂ ସେମାନଙ୍କ ଷଡଯନ୍ତ୍ର ହେତୁ ହିଁ ରାଜ୍ୟରେ ରାଜନୀତିକ ନେତୃତ୍ୱ ମଧ୍ୟ ଏହି ପରାମର୍ଶର ମହତ୍ତ୍ୱ ସମ୍ପର୍କରେ ଅନ୍ଧକାରରେ ରହିଯାଇଥିଲା । ସୁତରାଂ ପରାମର୍ଶଟି ବ୍ୟର୍ଥ ହୋଇଯାଇଥିଲା । ବ୍ୟର୍ଥ ହୋଇଯାଇଥିଲା ସେତେବେଳେ ଏ ରାଜ୍ୟର ଶିକ୍ଷାଜଗତର ଅତିନ୍ଦ୍ର ବିବେକ । ମାତ୍ର ବ୍ୟର୍ଥ ହୋଇଯାଇଥିବା ବିବେକର ପରାମର୍ଶ କ'ଣ ବୃଥା ?

ଓଡ଼ିଶାର ଶିକ୍ଷାବିତ୍‌ମାନେ, ଅଧ୍ୟାପକ-ଅଧ୍ୟାପିକାମାନେ ଏବଂ ଓଡ଼ିଶାରେ ଶିକ୍ଷା ବିକାଶର ପ୍ରକୃତ ସପକ୍ଷବାଦୀମାନେ ଏହି ପ୍ରଶ୍ନ ଉପରେ ଆଜି ମନୋନିବେଶ କରିବା ଆବଶ୍ୟକ । ରାଜ୍ୟର ରାଜନୀତିକ ନେତୃତ୍ୱ ଯଦି ଓଡ଼ିଶାରେ ଶିକ୍ଷା ବିକାଶ ପାଇଁ ପ୍ରକୃତରେ ଆଗ୍ରହୀ, ତେବେ କାଳର କବର ଖୋଳି ବିଧୁବାବୁଙ୍କ ପରାମର୍ଶ ଉପରେ ତଦାନୀନ୍ତନ ସରକାର ନେଇଥିବା ନକାରାତ୍ମକ ନିଷ୍ପତ୍ତିକୁ କବର ଦେଇଦେବା ଉଚିତ୍ ଏବଂ ସେହି ପରାମର୍ଶକୁ ଆଜି ସମଗ୍ରତଃ କାର୍ଯ୍ୟକାରୀ କରିବା ଉଚିତ୍ ।

ହଷ୍ଟେଲ୍ ତତ୍ତ୍ୱାବଧାରକ, ବର୍ସାର୍, ପରୀକ୍ଷା ପରିଚାଳକ, ଅଧ୍ୟକ୍ଷ, ବରିଷ୍ଠ ପ୍ରଶାସନିକ ବର୍ଗର ଶିକ୍ଷା ପଦାଧିକାରୀ ଆଦି ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ

ପଦପଦବୀରେ ଅଧ୍ୟାପକମାନେ ରହୁଥିବା ବେଳେ ଶିକ୍ଷା ସଚିବ, ବିଭାଗର ଶାସନ ସଚିବ ସମେତ ସଚିବାଳୟର ଅନ୍ୟାନ୍ୟ ପଦପଦବୀରେ ସେମାନେ ରହିବା ଅପରିହାର୍ଯ୍ୟ ମନେ ହେଉଛି । ସେଥିପାଇଁ ସେମାନଙ୍କୁ ଚାକିରି ଆରମ୍ଭରୁ ଉପଯୁକ୍ତ ପ୍ରଶାସନିକ ତାଲିମ ଦେବା ପାଇଁ ବିଧୁବାବୁ ଯେଉଁ ପରାମର୍ଶ ଦେଇଥିଲେ ତାହା ଯେ ଯଥାର୍ଥ ଥିଲା, ବିଳମ୍ବରେ ହେଉ ପଛେ, ଏବେ ସରକାର ଓ ସାରା ରାଜ୍ୟ ସ୍ୱୀକାର କରିବା ଉଚିତ୍ । ଅପର ପକ୍ଷେ, ଭିନ୍ନ ଭିନ୍ନ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଲାଭ କରିଥିବା ବ୍ୟକ୍ତିମାନେ ଅଧ୍ୟାପକ ପଦପାଇଁ ମନୋନୀତ ହେଉଥିବା ବେଳେ, ବିଶ୍ୱବିଦ୍ୟାଳୟଗତ ପ୍ରଭେଦ ଓ ମୂଲ୍ୟାୟନଗତ ବୈଷମ୍ୟ ହେତୁ ସେମାନଙ୍କ ଶିକ୍ଷା-ମାନର ଅସମତା ଓ ସେହେତୁ ଶିକ୍ଷାଦାନର ଶକ୍ତିରେ ମଧ୍ୟ ତାରତମ୍ୟ ରହିବା ସ୍ୱାଭାବିକ ବୋଲି ସେତେବେଳେ ବିଧୁବାବୁ ଯେଉଁ ମନ୍ତବ୍ୟ ଦେଇଥିଲେ, ତାହା ଏବର ସ୍ୱାୟତ୍ତ ମହାବିଦ୍ୟାଳୟଗୁଡ଼ିକର ସଂଖ୍ୟାବୃଦ୍ଧି ପ୍ରେକ୍ଷାପଟରେ ଆହୁରି ଅଧିକ ପ୍ରଣିଧାନଯୋଗ୍ୟ ହୋଇ ଉଠିଲାଣି । ଏହି ବୈଷମ୍ୟ ଓ ବିଚ୍ୟୁତି ଅପନୋଦନ ପାଇଁ ଲୋକସେବା ଆୟୁକ୍ତଙ୍କ ଦ୍ୱାରା ମନୋନୀତ ଅଧ୍ୟାପକ-ପ୍ରାର୍ଥୀମାନଙ୍କୁ ସ୍ଥାୟୀ ନିଯୁକ୍ତି ପୂର୍ବରୁ ଶିକ୍ଷାଦାନରେ ଉପଯୁକ୍ତ ତାଲିମ୍ ପାଇଁ ସେ ଯେଉଁ ପରାମର୍ଶ ଦେଇଥିଲେ, ଏତଦ୍ ଦୃଷ୍ଟିରୁ, ତାହା ମଧ୍ୟ ଅପରିହାର୍ଯ୍ୟ ମନେ ହେଉଛି । ଅତଏବ, ଦୀର୍ଘ ୩୦ ବର୍ଷ ଅତିବାହିତ ହୋଇଯାଇଥାଉ ପଛେ, ରାଜ୍ୟ ସରକାର ଅଭିଲେଖାଗାରରୁ ବିଧୁବାବୁଙ୍କ ୨୬/୧୨/୬୯ ତାରିଖରେ ୫୬୫୩ ସଂଖ୍ୟକ ପତ୍ରଟିକୁ ଉଦ୍ଧାର କରି ଉଚିତ୍ ଏବଂ ତାହାକୁ ସାମଗ୍ରିକ ଭାବେ କାର୍ଯ୍ୟକାରୀ କରିବା ଉଚିତ୍ ।

କାରଣ, ଯେଉଁ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ନହୋଇଛି, ଶିକ୍ଷାଦାନରେ ସମାନ ମାନର ଯୋଗ୍ୟ ଅଧ୍ୟାପକ ଯେଉଁ ପର୍ଯ୍ୟନ୍ତ ଛାତ୍ର ସମାଜ ପାଇଁ ଉପଲବ୍ଧ ନ ହୋଇଛନ୍ତି, ଯେଉଁ ପର୍ଯ୍ୟନ୍ତ ଆଇ.ଏ.ଏସ୍. ଏବଂ ଓ.ଏ.ଏସ୍ ଅଫିସରମାନଙ୍କ କବ୍‌ଜାରୁ ଶିକ୍ଷା ବିଭାଗ ମୁକ୍ତ ନହୋଇଛି, ଯେଉଁ ପର୍ଯ୍ୟନ୍ତ ଶିକ୍ଷା-ପ୍ରଶାସନର ପ୍ରତି ସ୍ତରରେ ପ୍ରଶାସନିକ-ପରିଚାଳନାରେ ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷାବିତ୍‌ମାନେ ଅଧିଷ୍ଠିତ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ଚଳିତ ଦୁଃସ୍ଥିତିରୁ ଶିକ୍ଷାଜଗତ ନିଷ୍କୃତି ପାଇବା ଅସମ୍ଭବ ।

ତାଙ୍କର ଅବର୍ତ୍ତମାନରେ, ଓଡ଼ିଶାର ଏହି ''ବ୍ୟର୍ଥ-ବିବେକ'' ଆଜି ମନେ ହେଉଛନ୍ତି ଅଧିକ ଜାଜ୍ୱଲ୍ୟମାନ, ଅଧିକ ନିର୍ଣ୍ଣାୟକ । ତାଙ୍କୁ ମୋର ଭକ୍ତିପୂତ ନମସ୍କାର ।

# ତସ୍ମୈ ଶ୍ରୀ ଗୁରବେ ନମଃ

*ରଘୁନାଥ ପଣ୍ଡା*

ଚଳିତ ଜୁନ୍ ଦୁଇ ତାରିଖ ଦିନ ପ୍ରଫେସର ବିଧୁଭୂଷଣ ଦାସଙ୍କ ସ୍ୱର୍ଗବାସ ହେବା କାରଣରୁ ଓଡ଼ିଶାର ଶୈକ୍ଷିକ ତଥା ବୌଦ୍ଧିକ ଆକାଶରୁ ଏକ ଦୀପ୍ତିମାନ ଜ୍ୟୋତିଷ୍କ ଅନ୍ତର୍ହିତ ହୋଇଗଲା । ସେ ୧୯୪୪ସାଲରେ ପାଟଣା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଏମ୍.ଏ. ରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ସେହିବର୍ଷ ସେ ଓଡ଼ିଶାର ସ୍ୱନାମଧନ୍ୟ ଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗଦେଇଥିଲେ । ପରେ ଆମେରିକା ଯୁକ୍ତରାଷ୍ଟ୍ରସ୍ଥ କଲମ୍ବିଆ ବିଶ୍ୱବିଦ୍ୟାଳୟ ଏବଂ ଇଂଲଣ୍ଡର ସୁପ୍ରସିଦ୍ଧ ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟରୁ ଉଚ୍ଚତର ଶିକ୍ଷାପ୍ରାପ୍ତ ହୋଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ ଏବଂ ୧୯୫୨ ମସିହାରେ ରେଭେନ୍ସା କଲେଜ ଇଂରାଜୀ ବିଭାଗରେ ପ୍ରଫେସର ପଦକୁ ଉନ୍ନୀତ ହୋଇଥିଲେ । ଏହିଠାରେ ପ୍ରଫେସର ପଦବୀରେ ସାତ ବର୍ଷ କାର୍ଯ୍ୟ କରିବା ପରେ ଇଣ୍ଡିଆନ୍ ଆଡ୍‌ମିଶନ ଦ୍ୱାରା ମନୋନୀତ ହୋଇ ନେପାଳ ରାଜଧାନୀ କାଠମାଣ୍ଡୁସ୍ଥ ତ୍ରିଭୁବନ ବିଶ୍ୱବିଦ୍ୟାଳୟରେ ଇଂରାଜୀ ବିଭାଗ ମୁଖ୍ୟ ତଥା ପ୍ରଫେସର ପଦରେ ଅଧିଷ୍ଠିତ ହୋଇ ଦାୟୀତ୍ୱ ନିର୍ବାହ କରିଥିଲେ । ଏହା ପରେ ରାଞ୍ଚି କଲେଜର ଅଧ୍ୟକ୍ଷ ରୂପେ ଅବସ୍ଥାପିତ ହୋଇଥିଲେ । ଏଠାରେ କିଛି ବର୍ଷ କାର୍ଯ୍ୟ କରିବା ପରେ ୧୯୬୮ ଜୁନ୍ ମାସରେ ରେଭେନ୍ସା କଲେଜରେ ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ । ପରେ ସେ ଓଡ଼ିଶା ଉଚ୍ଚ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଏବଂ ଶେଷରେ କିଛିଦିନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି କାର୍ଯ୍ୟ ଦକ୍ଷତାର ସହ ତୁଲାଇଥିଲେ । ଅବସର ଗ୍ରହଣ ପରେ ସେ ଦୁଇବର୍ଷ ଉତ୍ତରପୂର୍ବ ପାର୍ବତ୍ୟ ବିଶ୍ୱବିଦ୍ୟାଳୟରେ ଭିଜିଟିଂ ପ୍ରଫେସର ଭାବେ କାର୍ଯ୍ୟ କରିଥିଲେ ।

ରେଭେନ୍ସା କଲେଜରେ ଦୀର୍ଘ ପାଞ୍ଚବର୍ଷ ସମୟ ସାର୍‌ଙ୍କ ଛାତ୍ର ହେବାର ସୌଭାଗ୍ୟ ମୋର ହୋଇଥିଲା । ଆମ ବ୍ୟାଚ୍‌ର ଆମେ ସମସ୍ତେ ଯେତେବେଳେ ଇଂରାଜୀ ଷଷ୍ଠ ବାର୍ଷିକ ଶ୍ରେଣୀର ଛାତ୍ରଥିଲୁ ସେହିବର୍ଷ ସେ ନେପାଳ ଗଲେ ଏବଂ ତାଙ୍କ ପରେ ଡକ୍ଟର ଏ.ପି. ଓବ୍ରାଏନ୍ ଆମର ପ୍ରଫେସର ହେଲେ ।

ପ୍ରଫେସର ଦାସ ଇଂରାଜୀ ସାହିତ୍ୟରେ ପର୍ଯ୍ୟାପ୍ତ ଜ୍ଞାନର ଅଧିକାରୀ ଥିଲେ । ପୁସ୍ତକ ପଠନ ତାଙ୍କର ନିତ୍ୟ କର୍ମ ଥିଲା ବୋଲି କହିଲେ ଚଳେ । ତାଙ୍କର ଅଗଣିତ

ଛାତ୍ରଛାତ୍ରୀ ଅନୁଭବ କରିଛନ୍ତି ଯେ ଶିକ୍ଷାଦାନ ସମୟରେ ସେ ସର୍ବଦା ଉଚ୍ଚମାନ ରକ୍ଷା ପ୍ରତି ସଚେତନ ଥିଲେ । ଅନେକ ଧର୍ମୀୟ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସେ ସଂପୃକ୍ତ ଥିଲେ । ଇଂରାଜୀ ସାହିତ୍ୟ ଓ ଅନ୍ୟ ଯେ କୌଣସି ବିଷୟ ଉପରେ ସେ ବକ୍ତୃତା ଦେଉଥିଲେ, ସେଥିରୁ ତାଙ୍କର ଗଭୀର ବିଦ୍‌ବତ୍ତା ଓ ଜ୍ଞାନର ବ୍ୟାପକତା ସମ୍ବନ୍ଧରେ ସୂଚନା ମିଳୁଥିଲା । ସେତେବେଳେ ଆଜିକାଲି ପରି ଏତେ ବହି କିମ୍ବା ଜର୍ଣ୍ଣାଲ୍ ମିଳୁନଥିଲା । ତେଣୁ ଆମେ ଶ୍ରେଣୀଗୃହ ବକ୍ତୃତା ଉପରେ ଅଧିକ ନିର୍ଭର କରୁଥିଲୁ । ସୌଭାଗ୍ୟର ବିଷୟ ଏହି ଯେ ଆମ ସମୟରେ ରେଭେନ୍‌ସାରେ ପ୍ରତ୍ୟେକ ଉପାଧ୍ୟୁତ୍ତର ବିଭାଗରେ ବଛା ବଛା ଅଧ୍ୟାପକମାନେ ଅବସ୍ଥାପିତ ହୋଇଥିଲେ ।

କଲେଜ ଓ ବିଶ୍ୱବିଦ୍ୟାଳୟ ପ୍ରଫେସର ରୂପେ ସାର୍ ଯେପରି ଦକ୍ଷତା ପ୍ରଦର୍ଶନ କରିଥିଲେ ସେହିପରି ଦକ୍ଷତା ପ୍ରଦର୍ଶନ କରିଥିଲେ ଜଣେ ଶିକ୍ଷା ପ୍ରଶାସକ ଭାବେ । ଉଚ୍ଚଶିକ୍ଷା ବିଭାଗ ନିର୍ଦ୍ଦେଶକ ଥିବା ସମୟରେ ସେ ଅନେକଗୁଡ଼ିଏ ଶିକ୍ଷା ସଂସ୍କାରଧର୍ମୀ ପଦକ୍ଷେପ ଗ୍ରହଣ କରିଥିଲେ । କଲେଜ ଶିକ୍ଷକମାନେ ଲେସନପ୍ଲାନ୍ ଓ ଲେସନ୍ ନୋଟସ୍ ପ୍ରସ୍ତୁତ କରିବା ଏବଂ ପ୍ରତ୍ୟେକ ଶିକ୍ଷାଦାନୀ ବିଭାଗରେ ପ୍ରୋଗ୍ରେସ୍ ରେଜିଷ୍ଟାର ମେଣ୍ଟେନ୍ କରିବା ଉପରେ ସେ ଜୋର ଦେଉଥିଲେ ଏବଂ ବିଭିନ୍ନ ସମୟରେ ଏ ସମ୍ପର୍କିତ ସାର୍କୁଲାର୍ କଲେଜମାନଙ୍କୁ ପଠାଉଥିଲେ । ବିଭିନ୍ନ ପ୍ରକାରର ଶିକ୍ଷା ସମସ୍ୟା ଉପରେ ସେ ସରକାରଙ୍କୁ ସମୁଚିତ ପରାମର୍ଶ ଦେଉଥିଲେ । ଉଚ୍ଚପଦସ୍ଥ ସରକାରୀ ଅଫିସର ଏପରିକି ମନ୍ତ୍ରୀଙ୍କ ଆଗରେ ସଂକୁଚିତ ହୋଇ ସେ କଥାବାର୍ତ୍ତା କରୁନଥିଲେ । ତାଙ୍କ ଯୋଗୁଁ ସେତେବେଳେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶାଳୟର ଇଜ୍ଜତ୍ ଥିଲା, ସମ୍ମାନ ଥିଲା । ତାଙ୍କ ପରେ ନିର୍ଦ୍ଦେଶାଳୟର ଅବସ୍ଥା ଯାହା ହେଲା, ସମସ୍ତେ ଜାଣନ୍ତି ।

ରେଭେନ୍‌ସା କଲେଜ ଇଂରାଜୀ ବିଭାଗ ଓଡ଼ିଶାର ସର୍ବପ୍ରାଚୀନ ଉପାଧ୍ୟୁତ୍ତର ବିଭାଗ । ସାର୍ ଏହି ବିଭାଗର ପ୍ରଫେସର ଦାୟିତ୍ୱ ଗ୍ରହଣ କରିବା ପରେ ପରେ ଅନର୍ସ୍ ଓ ଉପାଧ୍ୟୁତ୍ତର ଶ୍ରେଣୀ ପାଠ୍ୟଖସଡ଼ା ଓ ଶିକ୍ଷାଦାନ ପ୍ରଣାଳୀର ଆଧୁନିକୀକରଣ କରିଥିଲେ ।

ଜାତସ୍ୟ ହି ଧ୍ରୁବୋମୃତ୍ୟୁଃ । ଏହି ଉକ୍ତିଟିର ଦୁର୍ଲ୍ଲଙ୍ଘ୍ୟ ସତ୍ୟତା ଆମେ ସମସ୍ତେ ଅନୁଭବ କରିଥିଲେ ମଧ୍ୟ କେତେଗୋଟି ମୃତ୍ୟୁ ଥାଏ ଯାହାକି ଆମ ଭିତରେ ଏବଂ ବାହାରେ ଏକ ଅଶ୍ୱସ୍ତିକର ଶୂନ୍ୟତା ସୃଷ୍ଟି କରିଥାଏ । ସାର୍‌ଙ୍କ ପରଲୋକ ଗମନ ଏହି ଶ୍ରେଣୀର ଏକ ମୃତ୍ୟୁ । ତାଙ୍କ ଆତ୍ମା ଶାନ୍ତିରେ ରହୁ ।

ଅବସରପ୍ରାପ୍ତ ଅଧ୍ୟକ୍ଷ
ବାଣୀକଣ୍ଠ ନଗର
ଆଠଗଡ

# ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ

*ଦେବେନ୍ଦ୍ରନାଥ ମହାପାତ୍ର*

ପ୍ରଫେସର ବିଧୁଭୂଷଣ ଦାସଙ୍କୁ ମୁଁ ରେଭେନ୍ସା କଲେଜରେ ପଢୁଥିଲା ବେଳେ ଦେଖିଥିଲି । କିନ୍ତୁ ତାଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନଥିଲା । ଜଣେ ଦକ୍ଷ, ଜ୍ଞାନୀ ଓ ମୌଳିକ ଚିନ୍ତାଧାରାସମ୍ପନ୍ନ ଇଂରାଜୀ ଅଧ୍ୟାପକ ହିସାବରେ ଛାତ୍ରଙ୍କ ମହଲରେ ତାଙ୍କର ଯଥେଷ୍ଟ ସୁନାମ ସେତେବେଳେ ରହିଥିଲା । ୧୯୬୫ ମସିହାରେ ଭାରତୀୟ ଷ୍ଟେଟ୍ ବ୍ୟାଙ୍କରେ ଜଣେ ପ୍ରୋବେସନାରୀ ଅଫିସର ଭାବରେ ବିହାର ରାଜ୍ୟର ରାଞ୍ଚିଠାରେ ମୁଁ କାର୍ଯ୍ୟ କରୁଥିବା ବେଳେ ବିଧୁବାବୁ ରାଞ୍ଚି କଲେଜ୍‌ର ଅଧକ୍ଷ ଥିଲେ । ତାଙ୍କର ସହଧର୍ମିଣୀ ପ୍ରଭାତ ନଳିନୀ ଦାସ ମଧ୍ୟ ସେହି କଲେଜ୍‌ରେ ଇଂରାଜୀ ବିଭାଗର ଅଧ୍ୟାପିକା ଥିଲେ । ସେତେବେଳେ ଇଂରାଜୀ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି ତାଙ୍କ ପାଖରେ ରହି କୌଣସି ବିଷୟରେ ଗବେଷଣା କରୁଥିଲେ । ଯତୀନ୍ଦ୍ର ବାବୁ ରେଭେନ୍ସା କଲେଜରେ ମୋର ଇଂରାଜୀ ଅଧ୍ୟାପକ ଥିଲେ । ତାଙ୍କ ସହିତ ମୋର ପରିଚୟ ଥିବାରୁ ତାଙ୍କ ପାଖକୁ ଯିବାଆସିବା କରିବା ଭିତରେ ମୁଁ ଉଭୟ ବିଧୁବାବୁ ଓ ପ୍ରଭାତ ନଳିନୀଙ୍କ ସହିତ ପରିଚିତ ହେବାର ସୌଭାଗ୍ୟ ଲାଭ କରିଥିଲି । ରାଞ୍ଚିରେ ଜଣେ ଓଡ଼ିଆ ବ୍ୟାଙ୍କ ଅଫିସରଙ୍କୁ ଦେଖି ଉଭୟ ଖୁବ୍ ଖୁସି ହୋଇଥିଲେ । ମୁଁ ବେଳେ ବେଳେ ତାଙ୍କର ଅଧକ୍ଷ ବାସଭବନକୁ ତାଙ୍କପାଖକୁ ଯାଉଥିଲି । ଉଭୟେ ମୋତେ ଯଥେଷ୍ଟ ସ୍ନେହ ଓ ଆଦର କରୁଥିଲେ । ତାଙ୍କ ଘରେ କେତେଥର ନିମନ୍ତ୍ରିତ ହୋଇ ଖାଇବାର ସୌଭାଗ୍ୟ ଲାଭ କରିଥିଲି । କଥାବାର୍ତ୍ତା ବେଳେ ସେ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ, ଶିକ୍ଷାବିତ୍ ଓ ଚିନ୍ତାଶୀଳ ବ୍ୟକ୍ତି ବୋଲି ମୋତେ ଜଣା ପଡିଥିଲେ । ମୁଁ ମନେ ମନେ ତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲି । ପରବର୍ତ୍ତୀ ସମୟରେ ମୁଁ କେତେଥର ତାଙ୍କର ସାନ୍ନିଧ ଲାଭ କରି ତାଙ୍କ ସହିତ ଆଳାପ ଆଲୋଚନା କରିବାର ସୁଯୋଗ ପାଇଥିଲି ଅନେକ ଥର ତାଙ୍କର ଶିକ୍ଷା ଓ ସଂସ୍କୃତି ବିଷୟକ ଭାଷଣ ଶୁଣିଥିଲି ଓ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ତାଙ୍କର କେତେଗୁଡିଏ ସାରଗର୍ଭକ ଲେଖା ପଢ଼ି ଅନୁପ୍ରାଣିତ ହୋଇଥିଲି । ସେ ଯେ ଓଡ଼ିଶାର ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ, ଶିକ୍ଷାବିତ୍ ଓ ଚିନ୍ତାନାୟକ, ଏଥିରେ ସନ୍ଦେହ ନାହିଁ । ରାଞ୍ଚିରେ ବେଳେ ବେଳେ ତାଙ୍କର ଅବସର ସମୟରେ ଦେଖା ହେଲେ ସେ ମୋତେ ଏବଂ ଯତୀନ୍ଦ୍ର ବାବୁଙ୍କୁ ତାଙ୍କର କାଠମାଣ୍ଡୁ ବିଶ୍ୱବିଦ୍ୟାଳୟର କିଛି ଅନୁଭୂତି ଓ ରାଞ୍ଚି କଲେଜର କେତେକ ସମସ୍ୟା ବିଷୟ ଗପ କରୁଥିଲେ । ସେ

ଅତ୍ୟନ୍ତ ଗମ୍ଭୀର ପ୍ରକୃତିର ବ୍ୟକ୍ତି ଥିଲେ । ଅପ୍ରାସଙ୍ଗିକ କିମ୍ବା ଅବାନ୍ତର ଆଲୋଚନା କଦାପି କରୁ ନଥିଲେ । ଜଣେ ନୀତିବାଦୀ, ଦକ୍ଷ ପ୍ରଶାସକ ଓ ଜ୍ଞାନୀ ଅଧ୍ୟକ୍ଷ ହିସାବରେ ରାଞ୍ଚି କଲେଜରେ ତାଙ୍କର ଯଥେଷ୍ଟ ସୁନାମ ଓ ଉଜ୍ଜ୍ୱଳ ଭାବମୂର୍ତ୍ତି ଥିବାର ମୁଁ ସେତେବେଳେ ବ୍ୟାଙ୍କକୁ ଆସୁଥିବା ରାଞ୍ଚି କଲେଜର କେତେଜଣ ଅଧ୍ୟାପକ ଓ ଛାତ୍ରଙ୍କଠାରୁ ଜାଣିବାକୁ ପାଇଥିଲି । ରାଞ୍ଚିରେ ସେତେବେଳେ ତାଙ୍କ ପୁତ୍ର ଶିବୁ ତାଙ୍କ ସଙ୍ଗରେ ରହୁଥିଲା । ଛୋଟ ପିଲାଟିଏ ସେ ସେତେବେଳେ । ସାର୍‌ଙ୍କ ଘରକୁ ଗଲେ ପ୍ରଥମେ ତା ସହିତ ମୋର ବେଶୀ କଥାବର୍ତ୍ତା ହେଉଥିଲା ।

ଓଡ଼ିଶା ରୁରାଲ ଇଣ୍ଟିଗ୍ରେଟେଡ୍ ଡେଭେଲପ୍‌ମେଣ୍ଟ ଏଜେନ୍ସି ୧୯୯୭ ମସିହାରେ 'ସଂକଳ୍ପ' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ସେଥିରେ 'ଗ୍ରାମୀଣ ବିକାଶର ସମସ୍ୟା' ଶୀର୍ଷକ ସାର୍‌ଙ୍କର ଏକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ମୋର ଗୋଟିଏ ପ୍ରବନ୍ଧ ସେଥିରେ ପ୍ରକାଶିତ ହୋଇଥିବାରୁ ମୁଁ ଏହି ପତ୍ରିକା ଖଣ୍ଡିଏ ପାଇଥିଲି । ସେଥିରୁ ସାର୍‌ଙ୍କର ସେହି ପ୍ରବନ୍ଧଟି ପାଠ କରି ମୁଁ ମୁଗ୍ଧ ହୋଇଥିଲି । ପ୍ରବନ୍ଧଟିର ଗ୍ରାମ୍ୟ ବିକାଶର କେତେକ ମୌଳିକ ସମସ୍ୟା ଉପରେ ସେ ସୁଚିନ୍ତିତ ମତାମତ ପ୍ରଦାନ କରିଥିଲେ । ସେ ଲେଖିଥିଲେ- ''ଆଜି ଆମ ଦେଶର ପ୍ରତ୍ୟେକ କ୍ଷେତ୍ରରେ ଯେଉଁ ସମସ୍ୟାମାନ ଦେଖା ଦେଇଛି ସେ ସବୁର ମୂଳରେ ରହିଛି ଗୋଟିଏ ପ୍ରଧାନ ସମସ୍ୟା - ଜାତୀୟ ଚରିତ୍ର ଓ ମୂଲ୍ୟବୋଧର ଅବକ୍ଷୟ, ଯେଉଁଥିପାଇଁ ରାଜୀବ ଗାନ୍ଧୀଙ୍କର ଖେଦୋକ୍ତି ଯେ ଯୋଜନା ପାଇଁ ଉଦ୍ଦିଷ୍ଟ ପ୍ରତ୍ୟେକ ଏକ ଟଙ୍କାରୁ ମାତ୍ର ଦଶ ପଇସା ଗ୍ରାମର ଲୋକଙ୍କ ପାଖରେ ପହଞ୍ଚିପାରୁଛି । କିନ୍ତୁ ଏହି ସମସ୍ୟାର ସମାଧାନ ସେ କରି ପାରି ନଥିଲେ । କାରଣ ଯେଉଁ ମୂଲ୍ୟବୋଧ ଦ୍ୱାରା ଏହା ସମ୍ଭବ ହୋଇ ପାରିଥାନ୍ତା, ତାହା ତାଙ୍କ ପୀଢ଼ିର ନେତୃବୃନ୍ଦ ବା ଶାସକଗୋଷ୍ଠୀ ପାଖରେ ନଥିଲା ବା ଆଜି ନାହିଁ । ସେମାନେ ସମସ୍ତେ ଯେଉଁ ଶିକ୍ଷା ଏବଂ ସାମାଜିକ ବଳୟରୁ ପ୍ରସୂତ, ସେହି ବଳୟ ଦୃଷ୍ଟିରେ ସାଧାରଣ ମଣିଷ କେବଳ ଗୋଟିଏ ନିର୍ଜୀବ ବସ୍ତୁ ବା Object ବା ପରିସଂଖ୍ୟାନର ସଂଖ୍ୟା । X X X ଆମ ଦେଶର ବିକାଶ ଯେପରି ଭାବରେ ହେଉଛି, ତାହା ଦ୍ୱାରା ଆମେ ଦେଶ ଦୁଇଟି ଦେଶରେ ପରିଚିତ ହୋଇଯିବ ଏକବିଂଶ ଶତାବ୍ଦୀ ବେଳକୁ- ଗୋଟିଏ ଧନୀର ଏବଂ ଅନ୍ୟ ଗୋଟିଏ ଦରିଦ୍ରର । ଏହିପରି ବିଭକ୍ତିକରଣ ହେଲେ ଯେଉଁ ସାମାଜିକ ଓ ରାଜନୈତିକ ବିସ୍ଫୋରକ ସମସ୍ୟାମାନଙ୍କର ଉଦ୍ଭବ ହେବ, ତାହା ମଣିଷର ଆୟତ୍ତର ବାହାରକୁ ଚାଲିଯିବ । ଦେଶର ଏହିପରି ସଙ୍କଟ ସମାଧାନ କରିବାକୁ ହେଲେ ଆଜି ସର୍ବପ୍ରଥମ ଆବଶ୍ୟକତା ହେଉଛି ଗୋଟିଏ ଜୀବନ ଦର୍ଶନ ଓ ମୂଲ୍ୟବୋଧ ଯାହା ଭାରତର ଇତିହାସ, ଐତିହ୍ୟ ଓ ସଂସ୍କୃତିକୁ ମୂଳ ଭିତ୍ତି କରି ପାଶ୍ଚାତ୍ୟ ଦେଶର ବୈଜ୍ଞାନିକ ଓ ଯାନ୍ତ୍ରିକ ସଭ୍ୟତାର ଉତ୍କୃଷ୍ଟଗୁଣଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିପାରିବ । X X X ଆମ ଦେଶର ସାଂପ୍ରତିକ ନେତୃବୃନ୍ଦ

ଯାହାଙ୍କୁ Media Construct ବୋଲି ମୁଁ ସୂଚିତ କରିଛି ଏବଂ ଯାହାଙ୍କ ପାଇଁ ଷାଠିଏ ଫୁଟେ ଉଚ୍ଚ ପ୍ରତିକୃତି ଆବଶ୍ୟକ ହୁଏ, ଏହି ପରିବର୍ତ୍ତନ ଆଣି ପାରିବେ ନାହିଁ । ଏଥିପାଇଁ ନୂଆ ନେତୃବୃନ୍ଦ ଆବଶ୍ୟକ ଯେଉଁମାନେ ଆମର ପ୍ରଚଳିତ ରାଜନୈତିକ ପ୍ରଣାଳୀରେ ଆମୂଳଚୂଳ ପରିବର୍ତ୍ତନ ଆଣିପାରିବେ । ସେପରି ନେତୃତ୍ୱର ଆବିର୍ଭାବ ହେଲେ ଆମର ଅଗଣିତ ଗ୍ରାମବାସୀଙ୍କର ଯଥାର୍ଥ ହିତ ସାଧିତ ହୋଇପାରିବ ବୋଲି ମୋର ବିଶ୍ୱାସ । X X X ଏଥିପାଇଁ ପ୍ରୟୋଜନ ଉଚ୍ଚମାନର ବୁଦ୍ଧି, କଳ୍ପନା ଶକ୍ତି ଏବଂ ଶୁଦ୍ଧତା (Intelligence, Imagination and Integrity) । ଆମ ଦେଶର ଗ୍ରାମାଞ୍ଚଳର ବିକାଶ ନିମିତ୍ତ ତାଙ୍କର ଏହି ସ୍ପଷ୍ଟବାଦିତା ଏକ ଅପ୍ରିୟ ସତ୍ୟ ଓ ଆମ ସମସ୍ତଙ୍କର ଗଭୀର ଭାବରେ ପ୍ରଣିଧାନଯୋଗ୍ୟ ।

୧୯୯୮ ମସିହା ଫେବୃୟାରୀ ମାସରେ ଭୁବନେଶ୍ୱର ଶ୍ରୀରାମ ମନ୍ଦିର ନିକଟବର୍ତ୍ତୀ 'ସତ୍‌ଶିକ୍ଷା ମନ୍ଦିର'ରେ ଅନୁଷ୍ଠିତ ଉତ୍କଳ ପ୍ରାଦେଶିକ ଭକ୍ତ ସମ୍ମିଳନୀର ସାଧାରଣ ସଭାରେ ସମ୍ମାନିତ ବକ୍ତା ହିସାବରେ ସେ ଯେଉଁ ସାରଗର୍ଭକ ଅଭିଭାଷଣ ପ୍ରଦାନ କରିଥିଲେ, ତାହା ମୁଁ ଶୁଣିବାର ସୌଭାଗ୍ୟ ଲାଭ କରିଥିଲି । ସେହି ଅଭିଭାଷଣରେ ବର୍ତ୍ତମାନର ଶିକ୍ଷା ସମ୍ବନ୍ଧୀୟ ତାଙ୍କର ମନ୍ତବ୍ୟ ଏବଂ ଆଦର୍ଶ ଶିକ୍ଷାନୀତି ସମ୍ପର୍କରେ ତାଙ୍କର ଚିନ୍ତାଧାରା ମୋତେ ଗଭୀର ଭାବରେ ପ୍ରଭାବିତ କରିଥିଲା । 'ନୀଳାଚଳ ସାରସ୍ୱତ ସଂଘ' ତରଫରୁ ପ୍ରକାଶିତ ମୁଖପତ୍ର 'ସଂଘସେବକ'ର ୩୫ ବର୍ଷ ତୃତୀୟ ସଂଖ୍ୟାରେ ସାର୍‌ଙ୍କର ଏହି ଅଭିଭାଷଣର ସାରାଂଶ ଲିପିବଦ୍ଧ ହୋଇଛି । ସାର୍ କହିଲେ,-" ଯେଉଁ ମଣିଷକୁ ଭଗବାନ ସୃଷ୍ଟି କରିଛନ୍ତି, ତାକୁ ଆମେ ଉପଯୁକ୍ତ ଶିକ୍ଷା ଦେଇ ଦେବୋପମ କରିପାରିବା । ଶିକ୍ଷାର ପ୍ରକୃତ ଲକ୍ଷ୍ୟ, ମଣିଷ ତିଆରି କରିବା । ବର୍ତ୍ତମାନ ଆମ ଦେଶରେ ଓ ସାରା ପୃଥିବୀରେ ଯେଉଁ ଶିକ୍ଷା ଦିଆଯାଉଛି, ତାହା ଶିକ୍ଷା ହୋଇପାରେ; ମାତ୍ର ବିଦ୍ୟା ନୁହେଁ । ଏହି ଶିକ୍ଷାର ଲକ୍ଷ୍ୟ ମାନବ ସମ୍ବଳର ବିକାଶ । ପ୍ରଚଳିତ ଶିକ୍ଷା ପ୍ରଣାଳୀରେ ମାନବକୁ ସମ୍ବଳ ହିସାବରେ ଗ୍ରହଣ କରାଯାଇଛି । ଏହି ଭାବଧାରା ପଚାଶ ଶତକରେ ପାଶ୍ଚାତ୍ୟ ଆମ ଦେଶକୁ ଆମଦାନୀ ହୋଇ ସାରିଛି । ଦେଶର ଆର୍ଥନୀତିକ ବିକାଶ ପାଇଁ ମଣିଷକୁ ଗୋଟିଏ ସାହାଯ୍ୟକାରୀ ସତ୍ତା ବା ଏଜେଣ୍ଟ୍ ହିସାବରେ ବ୍ୟବହାର କରାଯାଇଛି । ତେଣୁ ତାକୁ ଏପରି ଶିକ୍ଷା ଦିଆଯାଉଛି, ଯାହାଦ୍ୱାରା ସେ ସେହି ଉଦ୍ଦିଷ୍ଟ ବିକାଶମୂଳକ କାର୍ଯ୍ୟଟି କରିପାରିବ । ଭାରତର ଓ ସାରା ପୃଥିବୀର ଶିକ୍ଷା ପ୍ରଣାଳୀ ମାନବ ସମ୍ବଳର ଏହିଭଳି ବିକାଶ ନିମିତ୍ତ ବର୍ତ୍ତମାନ ଅଭିପ୍ରେତ । ବ୍ରିଟିଶ ଅମଳରୁ ପ୍ରାୟ ଦୁଇ ଶହ ବର୍ଷ ହେଲା ଆମର ଶିକ୍ଷାପ୍ରଣାଳୀ ଭାରତୀୟ ସଂସ୍କୃତି, ଐତିହ୍ୟ ଓ ପରମ୍ପରାଠାରୁ ବିଚ୍ଛିନ୍ନ ହେଲାଣି । ଭାରତୀୟ ସଂସ୍କୃତି ଓ ଚିନ୍ତାଧାରାରେ ମଣିଷର ଯେଉଁ ସଂଜ୍ଞା ଥିଲା, ଏବେ ତାହା ସ୍ୱୀକୃତ ନୁହେଁ । ତେଣୁ ଦେଶର ବୈଷୟିକ ଓ ଅର୍ଥନୈତିକ ବିକାଶ ନିମିତ୍ତ ସେ ସମ୍ବଳ

କୌ ଯନ୍ତ୍ର ହିସାବରେ ବ୍ୟବହୃତ । ଆମର ଶିକ୍ଷା ବିଭାଗକୁ ବର୍ତ୍ତମାନ ମାନବ ସମ୍ବଳ ବିକାଶ ବିଭାଗ (Human Resources Development Department) କୁହାଯାଉଛି । ଏ ପ୍ରକାର ନାମକରଣର ଅର୍ଥ ମଣିଷ ଏକ ସମ୍ବଳ ମାତ୍ର । ମଣିଷ ଯେ ବୁଦ୍ଧି, ଜ୍ଞାନ, ମନ ଓ ଆତ୍ମାର ଅନବଦ୍ୟ ଦୈବୀସୃଷ୍ଟି, ଏହା ବର୍ତ୍ତମାନର ଶିକ୍ଷାନାୟକମାନେ ଚିନ୍ତା କରି ପାରୁନାହାନ୍ତି । ତେଣୁ ଶିକ୍ଷା ମାଧ୍ୟମରେ ମାନବ ଶିଶୁର ସାମଗ୍ରିକ ବିକାଶ ନିମିତ୍ତ ଯେଉଁ ଶିକ୍ଷା ପଦ୍ଧତିର ବ୍ୟବସ୍ଥା ହେବା ଦରକାର, ତାହା କାହା ମନକୁ ସ୍ପର୍ଶ କରୁନାହିଁ । ପ୍ରଚଳିତ ଶିକ୍ଷାପଦ୍ଧତିରେ ସଂସ୍କାର ଓ ପରିବର୍ତ୍ତନ ଆନୟନ ନିମିତ୍ତ ବିଭିନ୍ନ କମିଟି ବିଭିନ୍ନ ସମୟରେ ରିପୋର୍ଟ ପ୍ରଦାନ କରିଛନ୍ତି । ଜନସଂଖ୍ୟା ବୃଦ୍ଧି ଦୃଷ୍ଟିରୁ ଶିକ୍ଷାନୁଷ୍ଠାନ ବୃଦ୍ଧିର ଯୋଜନା ସମ୍ପର୍କୀୟ ଚିନ୍ତା ସେଥିରେ ଅପେକ୍ଷାକୃତ ବେଶୀ ପ୍ରକାଶ ପାଇଛି ବୋଲି ମୋର ମନେ ହୁଏ; କିନ୍ତୁ ଶିକ୍ଷାର ଗୁଣାତ୍ମକ ବିକାଶ ତଥା ଶିକ୍ଷାର୍ଥୀମାନଙ୍କର ଆଧ୍ୟାତ୍ମିକ ଓ ମାନସିକ ବିକାଶ ନିମିତ୍ତ ସେଥିରେ ଯଥେଷ୍ଟ ଧ୍ୟାନ ଦିଆଯାଇନାହିଁ ।

"ଶିକ୍ଷାର ମୁଖ୍ୟ ଲକ୍ଷ୍ୟ ତିନୋଟି- ଶିକ୍ଷାର୍ଥୀମାନଙ୍କର ଶାରୀରିକ ବିକାଶ, ସେମାନଙ୍କର ସାଂସ୍କୃତିକ, ନାନ୍ଦନିକ ଓ ଆବେଗିକ ବିକାଶ ଏବଂ ବୌଦ୍ଧିକ ବିକାଶ (Cognitive development) । ପ୍ରଚଳିତ ଶିକ୍ଷା ପ୍ରଣାଳୀରେ ଶିକ୍ଷାର୍ଥୀର ବୌଦ୍ଧିକ ବିକାଶ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଥିବାରୁ ଶିକ୍ଷାର ଅନ୍ୟ ଦୁଇଟି ଲକ୍ଷ୍ୟ ସାଧିତ ହୋଇପାରୁ ନାହିଁ । ତେଣୁ ଶିକ୍ଷା ଦ୍ୱାରା ମଣିଷ 'ପୂର୍ଣ୍ଣାଙ୍ଗ ମଣିଷ'ରେ ପରିଣତ ହୋଇପାରୁନାହିଁ । ସେଥିଯୋଗୁଁ ଆଜିର ଶିକ୍ଷା ମଣିଷକୁ ଗୋଟିଏ ବିଷୟରେ ଅଧିକ ବା ବିଶେଷ ଶିକ୍ଷାପ୍ରାପ୍ତ ମଣିଷ (One dimensional man) ରେ ପରିଣତ କରି ଦେଉଛି । ମୋଟ କଥା, ସେ ବିଶେଷଜ୍ଞ ହେବା ପାଇଁ ଶିକ୍ଷା ପାଉଥିବାରୁ ଅନ୍ୟ କେତେକ ଆବଶ୍ୟକ ଶିକ୍ଷା ପାଇପାରୁନାହିଁ । ପ୍ରଚଳିତ ଶିକ୍ଷା ପଦ୍ଧତିରେ କ'ଣ ଅଭାବ ରହିଛି, ତାହାର ଉପଯୁକ୍ତ ଆଲୋଚନା ଓ ବିଶ୍ଳେଷଣ କରି ଆମେ ଜାଣିବା ପରେ ଆମକୁ ତାହାର ପ୍ରତିକାରର ବ୍ୟବସ୍ଥା କରିବାକୁ ହେବ । ଉଭୟ ଶିକ୍ଷାପ୍ରଣାଳୀ ଓ ଶିକ୍ଷାନୁଷ୍ଠାନର ପରିବର୍ତ୍ତନ ଆବଶ୍ୟକ ହେଉଛି । ଶିକ୍ଷାକୁ ଯୁଗୋପଯୋଗୀ ନ କରି ଜୀବନୋପଯୋଗୀ କରିବାକୁ ପଡିବ । ବର୍ତ୍ତମାନର ଶିକ୍ଷା ବିଦ୍ୟା ପରିବର୍ତ୍ତେ ଅବିଦ୍ୟା ବିସ୍ତାର କରୁଛି । ବର୍ତ୍ତମାନର ଶିକ୍ଷା ଶିକ୍ଷା ନୁହେଁ, ଅଶିକ୍ଷା ଓ କୁଶିକ୍ଷା । ଶିକ୍ଷା ମଣିଷକୁ ନୀତିବାନ୍, ଧାର୍ମିକ ଓ ସଂଯମୀ କରିଥାଏ, ଉତ୍ତମ ନାଗରିକ କରିଥାଏ । କିନ୍ତୁ ଶିକ୍ଷା କ୍ଷେତ୍ରରେ ବିଭ୍ରାଟ ଯୋଗୁଁ ବର୍ତ୍ତମାନ ଜୀବନରେ ମୂଲ୍ୟବୋଧ ନାହିଁ । ଅବାଞ୍ଛନୀୟ ଦିଗରେ ଲୋକଙ୍କର ଗତି । ସମାଜରେ ଦୁର୍ନୀତି ଭଳି ଗୁରୁତର ମାରାତ୍ମକ ସମସ୍ୟାର ସୃଷ୍ଟି ହୋଇଛି । ଛାତ୍ରଗୋଷ୍ଠୀଙ୍କର ଶିକ୍ଷା ଲାଭ ପାଇଁ ଆଗ୍ରହ ନାହିଁ ଡିଗ୍ରୀ ଲାଭ ପାଇଁ ସେମାନେ ବିବିଧ ଅପଚେଷ୍ଟାରେ ବ୍ୟସ୍ତ । ଶିକ୍ଷକ, ଅଧ୍ୟାପକ ଓ ଗୁରୁମାନେ ମଧ୍ୟ ଆଚାର ପରାୟଣ ନୁହଁନ୍ତି; ସେମାନଙ୍କର ଛାତ୍ରମାନଙ୍କ ପ୍ରତି ବ୍ୟବହାର ଓ ଶିକ୍ଷାଦାନ

ଠିକ୍ ରହୁନାହିଁ । ଶିକ୍ଷା ଦ୍ୱାରା ମଣିଷ ମନରେ ଆଧ୍ୟାତ୍ମିକତା ଓ ସୌନ୍ଦର୍ଯ୍ୟାନୁରାଗ ସୃଷ୍ଟି ହେବା ଆବଶ୍ୟକ । ବର୍ତ୍ତମାନର ଶିକ୍ଷା ଦ୍ୱାରା ତାହା ସମ୍ଭବ ହେଉନାହିଁ । ଶିକ୍ଷା କ୍ଷେତ୍ରରେ ଏହିସବୁ ସଙ୍କଟର ସମାଧାନ ନହେଲେ ଜାତୀୟ ଚରିତ୍ରର ଅବକ୍ଷୟକୁ ରୋକି ହେବ ନାହିଁ ।

''ଏକବିଂଶ ଶତାବ୍ଦୀର ନୂଆ ପୃଥିବୀରେ ଶିକ୍ଷା ସମସ୍ୟା ଓ ଶିକ୍ଷାକ୍ଷେତ୍ରର ସଙ୍କଟ ଆହୁରି ଉତ୍କଟ ହେବାର ଆଶଙ୍କା ପ୍ରକାଶ ପାଇଲାଣି । ଲୋକସଂଖ୍ୟା ବୃଦ୍ଧି ଓ ସମ୍ବଳର ଅଭାବ ଶିକ୍ଷା ବ୍ୟବସ୍ଥା ଉପରେ ପ୍ରଭାବ ପକାଇବ । ସେତେବେଳେ ଶିକ୍ଷାର ମାଧ୍ୟମ ହେବ ମହାକାଶ (cyberspace) । ତାହା ଉପରେ କୌଣସି ସରକାରଙ୍କର ନିୟନ୍ତ୍ରଣ ନାହିଁ । ସେଥିରୁ ଉପରିତ ଅବିଦ୍ୟା ତରୁଣ ସମାଜକୁ ଧ୍ୱଂସମୁଖକୁ ନେଇଯିବ । ସେମାନେ ଶ୍ରେୟ ମାର୍ଗ ଛାଡି ପ୍ରେୟମାର୍ଗକୁ ଆଶ୍ରୟ କରିବେ । ଲୋକେ ତଥ୍ୟ (Information) ପାଇବେ, ଜ୍ଞାନ ପାଇବେ ନାହିଁ । ମହାକାଶରୁ ଆସୁଥିବା ଶିକ୍ଷା ଉପାଦେୟ କି ଅନୁପାଦେୟ ତାହା ବିବେଚନା କରିବାକୁ କେହି ନଥିବେ । ଶିକ୍ଷାଦାତା ଗୁରୁମାନେ ଆଉ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ହୋଇ ରହିବେ ନାହିଁ । ସେମାନେ ମାନବ ସମ୍ବଳର ବିକାଶରେ କେବଳ ବ୍ରତୀ ରହିବେ । ଶିକ୍ଷାର୍ଥୀମାନଙ୍କ ସହ ସେମାନେ ସମ୍ପର୍କଶୂନ୍ୟ ହେବେ । ଶିକ୍ଷକଙ୍କ ଭିତରେ ଶିକ୍ଷାର୍ଥୀମାନଙ୍କ ପ୍ରତି ରହିଥିବା ସ୍ନେହ, ଶ୍ରଦ୍ଧା, ସଦାଚାର, ଦୟା ପ୍ରଭୃତି ଗୁଣଗୁଡିକର ଆଉ ଉପଯୋଗିତା ରହିବ ନାହିଁ । ଶିକ୍ଷାରୁ ନୈତିକ ମୂଲ୍ୟବୋଧ ଓ ଆଧ୍ୟାତ୍ମିକ ଚେତନା ମିଳିବ ନାହିଁ । ବିଜ୍ଞାନର କୁପ୍ରଭାବରେ ଆତ୍ମା ସମ୍ପର୍କରେ ସନ୍ଦିହାନ ହୋଇ ଆତ୍ମାର ସଦ୍‌ଗତି ବା ମୋକ୍ଷଲାଭ ପାଇଁ ଆମର କୌଣସି ପ୍ରୟାସ ରହିବ ନାହିଁ । ମଣିଷ କିପରି 'ଚିଦାନନ୍ଦ ରୂପଂ ଶିବୋଽହମ୍' ହୋଇ ପାରିବ- ସେ ବିଷୟରେ ଚିନ୍ତା କରିବା ସମୟ ବର୍ତ୍ତମାନ ସମାଗତ । ତେଣୁ ଶିକ୍ଷା ପ୍ରଣାଳୀରେ ଜ୍ଞାନ, ବିଜ୍ଞାନ ଓ ପ୍ରଜ୍ଞାନର ସମୀକରଣ ହେବା ଆବଶ୍ୟକ । ମହାକାଶ, ମଣିଷ ଓ ପ୍ରକୃତିର ସମନ୍ୱୟ ହେବା ଦରକାର । ପ୍ରତ୍ୟେକ ମଣିଷ ତାର ଅଣୁ ପରମାଣୁ ଦ୍ୱାରା ସାରା ବିଶ୍ୱ ସହିତ ସଂଯୁକ୍ତ । ସେହି ଚେତନା ଆମ ଭିତରେ ରହିଲେ, ଆମର ସଂକୀର୍ଣ୍ଣ ଅହଂଭାବ ଲୋପ ପାଇବ । ଆମର ପାଞ୍ଚ ହଜାର ବର୍ଷର ପୁରୁଣା ଐତିହ୍ୟ, ସଂସ୍କୃତି ଓ ପରମ୍ପରା ଓ ଆମ ଦେଶର ଜ୍ଞାନୀ ଗୁରୁ-ସନ୍ଥ-ମହାପୁରୁଷମାନଙ୍କର ଦିଗ୍‌ଦର୍ଶନକୁ କିପରି ଆଧୁନିକ ଯୁଗରେ ପ୍ରୟୋଗ କରିବା, ତାହା ଚିନ୍ତା କରି ଶିକ୍ଷା ପ୍ରଣାଳୀରେ ଆବଶ୍ୟକ ପରିବର୍ତ୍ତନ ଆଣିବାକୁ ହେବ । ସେଥିପାଇଁ ଆମର ବର୍ତ୍ତମାନର ଶିକ୍ଷା ପ୍ରଣାଳୀରେ ସାମଗ୍ରିକ ପରିବର୍ତ୍ତନ ଦରକାର । ସେହି ପରିବର୍ତ୍ତନ ଆନୟନ ପାଇଁ ଆମର ଆତ୍ମବିଶ୍ୱାସ ସହିତ ପ୍ରଶାସନିକ କ୍ଷେତ୍ରରେ 'ରାଜନୈତିକ ଇଚ୍ଛା' (Political Will) ଦରକାର । ପାଶ୍ଚାତ୍ୟ ଦେଶରେ ଶିକ୍ଷାକ୍ଷେତ୍ରରେ ପରିବର୍ତ୍ତନ ପାଇଁ ପ୍ରୟାସ ଆରମ୍ଭ ହୋଇଗଲାଣି । ଆମେରିକାରେ

ମଣିଷ ଜୀବନର ଉନ୍ନତିକୁ ଆଖି ଆଗରେ ରଖି ଶିକ୍ଷା ବ୍ୟବସ୍ଥା ପାଇଁ ବଜେଟ୍‌ରେ ଆବଶ୍ୟକୀୟ ଅର୍ଥର ବ୍ୟବସ୍ଥା କରାଗଲାଣି । ତେବେ ମଣିଷ ଜୀବନର ସଂଜ୍ଞା ଭୌତିକତା ଉପରେ ଆଧାରିତ ହେବ ନା ଆଧାତ୍ମିକତାକୁ ଆଧାର କରି ହେବ, ତାହା ସମୟ କହିବ ।''

ସାର୍ ତାଙ୍କର ଆତ୍ମଜୀବନୀ କିମ୍ବା ଅଧ୍ୟାପକ ଜୀବନର ସ୍ମୃତି ଓ ଅନୁଭୂତି କେଉଁଠାରେ କିଛି କରାଇଛନ୍ତି କି ନାହିଁ, ମୁଁ ଜାଣିନାହିଁ । ତେବେ ସେ କାଠମାଣ୍ଡୁ ବିଶ୍ୱବିଦ୍ୟାଳୟରେ ରାଞ୍ଚି କଲେଜ୍‌ରେ, ରେଭେନ୍‌ସା କଲେଜରେ, ଉତ୍ତର- ପୂର୍ବ ହିଲ୍ ବିଶ୍ୱବିଦ୍ୟାଳୟରେ ତାଙ୍କର ଅଧ୍ୟାପକ ତଥା ଅଧକ୍ଷ ଜୀବନର, ଓଡ଼ିଶାର ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଏବଂ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ କମିଟିର ଅଧକ୍ଷ ଓ ସଦସ୍ୟ ହିସାବରେ ତାଙ୍କର ମୂଲ୍ୟବାନ ସ୍ମୃତି, ଅନୁଭୂତି ଓ ଅଭିଜ୍ଞତା ଲିପିବଦ୍ଧ କରି ଯାଇଥିଲେ ତାହା ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ବୁଦ୍ଧିଜୀବୀଙ୍କର ଏକ ସ୍ମରଣୀୟ ଜୀବନଗାଥା ହୋଇପାରିଥାନ୍ତା । ଉପଯୁକ୍ତ ଭାବରେ ତାଙ୍କର କିଭଳି ସ୍ମୃତି ରକ୍ଷା ହୋଇପାରିବ, ତାହା ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ସହକର୍ମୀ, ବନ୍ଧୁ, ଅନୁରାଗୀ ଓ ତାଙ୍କର ପରିବାର ଓ ଆତ୍ମୀୟ ସ୍ୱଜନମାନେ ସ୍ଥିର କରିବେ । ମୋ ମତରେ କେହି ଜଣେ ଭଲ ଜୀବନୀକାର ତାଙ୍କର ଗୋଟିଏ ଉତ୍କୃଷ୍ଟମାନର ତଥ୍ୟପୂର୍ଣ୍ଣ ଜୀବନୀଟିଏ ଲେଖିପାରିଲେ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ତାହା ଏକ ଅମର କୀର୍ତ୍ତି ଭାବରେ ରହିପାରନ୍ତା । ଓଡ଼ିଶାର ଉଚ୍ଚଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ ଓ ଅବିସ୍ମରଣୀୟ ।

ଗତ ଜୁନ୍ ୩ ତାରିଖ ଦିନ ଭୁବନେଶ୍ୱର ଶହୀଦନଗରସ୍ଥିତ ତାଙ୍କର ଏ/୩୧୫ 'ପାବନୀ' ବାସଭବନରେ ମୁଁ ତାଙ୍କର ମର ଶରୀର ଦର୍ଶନକରି ପୁଷ୍ପଗୁଚ୍ଛ ପ୍ରଦାନ ପୂର୍ବକ ସାର୍‌ଙ୍କୁ ମୁଁ ମୋର ଶେଷ ପ୍ରଣାମ ଓ ଶ୍ରଦ୍ଧାଞ୍ଜଳି ଜଣାଇ ସହପାଠୀ ବନ୍ଧୁ ଓଡ଼ିଶାର ପୂର୍ବତନ ପୋଷ୍ଟମାଷ୍ଟର ଜେନେରାଲ ବିଜୟ ଦାସଙ୍କ ସହ ସାର୍‌ଙ୍କର ଶେଷ ଜୀବନ ସମ୍ପର୍କରେ କିଛି କଥାବାର୍ତ୍ତା କରି ଫେରି ଆସୁଥିବା ବେଳେ ସାର୍‌ଙ୍କ ସଙ୍ଗେ ରାଞ୍ଚିଠାରେ ହୋଇଥିବା ମୋର ପ୍ରଥମ ପରିଚୟ ଓ ସାକ୍ଷାତ୍‌ର କଥା ଭାବି ଭାବି ଆସୁଥିଲି । ତାଙ୍କର ବିୟୋଗରେ ଓଡ଼ିଶାର ଶିକ୍ଷା ଜଗତରୁ ଏକ ଉଜ୍ଜ୍ୱଳ ନକ୍ଷତ୍ରର ବିଲୟ ଘଟିଲା । ମୁଁ ତାଙ୍କର ଅମର ଆତ୍ମାର ସଦ୍‌ଗତି ଓ ଶାନ୍ତି ନିମିତ୍ତ ଭଗବାନଙ୍କଠାରେ ପ୍ରାର୍ଥନା ଜଣାଉଛି ।

୨୧୭୪/୪୭୭୭, ବି.ଜେ.ବି. ନଗର
ଭୁବନେଶ୍ୱର-୧୪

# ଜ୍ଞାନଦୀପ୍ତ ସାର୍‌ଙ୍କ ବିୟୋଗ

*ଶକୁନ୍ତଳା ବଳିଆରସିଂହ*

ସାର୍ ଆଉ ନାହାନ୍ତି । ସ୍ୱର୍ଗରେ ତାଙ୍କର କ୍ଲାସ ଚାଲିଥିବ, ଏଭଳି ଲାଗେ । ଆମେ ଯେଉଁମାନେ ତାଙ୍କର ଛାତ୍ର ବା ଛାତ୍ରଙ୍କ ଛାତ୍ର, ତାଙ୍କର ମର୍ଯ୍ୟାଦା ରଖିପାରିଲୁ ନାହିଁ । ଯେଉଁ ଯୋଗ୍ୟତାର ମାପକାଠି ସେ ନିର୍ମାଣ କରିଥିଲେ, ସେଥିରେ ଆମେ କେହି ଉତୁରି ପାରିଲୁ ନାହିଁ । ତାଙ୍କର ଭାଷଣଟିଏ ଶୁଣିଲାବେଳେ ସବୁବେଳେ ନିଜକୁ ଅଯୋଗ୍ୟ ବୋଧ କରୁଛୁ ଆମେ । ଲୋକ ଗହଳିରେ ତାଙ୍କ ଆଖି ସବୁବେଳେ ଖୋଜୁଥାଏ ଆଉ ଯୋଡିଏ ପ୍ରଜ୍ଞାଦୀପ୍ତ ଆଖି । ସାର୍‌ଙ୍କୁ ପ୍ରକୃତ ସମ୍ମାନ ହେବ ଯଦି ଆମ ବିଶ୍ୱବିଦ୍ୟାଳୟରୁ ଶିକ୍ଷାପାଇ ବାହାରିଥିବା ଛାତ୍ରଙ୍କ ଭିତରେ ସେ ପ୍ରବଳ ଅନୁସନ୍ଧିତ୍ସାରୁ କାଣିଚାଏ ରହିବ । ସେହି କାଣିଚାଏ ହେବ ତାଙ୍କର କୈବଲ୍ୟ ।

ନିଜର ଯଶ ବା ପ୍ରତିଷ୍ଠା ପ୍ରତି ସଦା ଉଦାସୀନ ଏହି ମନସ୍ୱୀ ପୁରୁଷ କେବେହେଲେ ନିଜ ପାଇଁ କିଛି କରିନାହାନ୍ତି । ଆଦର୍ଶକୁ ବଳିଦେଇ ନାହାନ୍ତି, ନିଷ୍ଠାରେ ଚଳିଛନ୍ତି, ସମ୍ମାନ ଆସିଛି ଆପେ ଆପେ । ତାଙ୍କୁ ତାଙ୍କ ରଚନାଗୁଡିକୁ ଏକାଠି କରି ଗୋଟିଏ ସଂକଳନ ପ୍ରକାଶ କରିବା ପାଇଁ ଅନୁମତି ମାଗିଥିଲି ମୁଁ ସାର୍ ଜାଣିଥିଲେ, ସେ ଯୋଗ୍ୟତା ମୋର ନାହିଁ, ତେଣୁ ଶେଷସୁଦ୍ଧା ତାହା ସମ୍ଭବ ହେଲାନାହିଁ ।

ବର୍ତ୍ତମାନ ଏ ଦାୟିତ୍ୱ ସମଗ୍ର ରାଜ୍ୟର । ଯେକୌଣସି ପ୍ରକାଶନ ସଂସ୍ଥା ବା ଓଡ଼ିଶା ସରକାର ଏହାର ଦାୟିତ୍ୱ ନେଇପାରିବେ । ଏଥିପାଇଁ ସୁଯୋଗ୍ୟ ସଂପାଦକଙ୍କ ଅଭାବ ହେବ ନାହିଁ । ସାର୍‌ଙ୍କ ଆଶୀର୍ବାଦରୁ ସେଭଳି ବ୍ୟକ୍ତି ମଧ୍ୟ ମିଳିଯିବେ ।

ଗୋଟିଏ ସମ୍ପୂର୍ଣ୍ଣ ବୌଦ୍ଧିକ ଜୀବନ ବଞ୍ଚିଥିବା ଜଣେ ବ୍ୟକ୍ତି ଯେତେବେଳେ ସଂସାରରୁ ଚାଲିଯାଏ, ସେତେବେଳେ ଗୋଟିଏ ଚୌକି, ଗୋଟିଏ ଖଟ, ବା ଠିଆ ହେବାର ଚାଖଣ୍ଡେ ଜାଗା ଖାଲି ପଡେ ନାହିଁ, ପୃଥିବୀର ଆତ୍ମାର କିୟଦଂଶ ମରିଯାଏ । ଆତ୍ମାର ସେ ଭୂଭାଗ ଗଢ଼ି ଉଠିବା ପାଇଁ ଲାଗେ ଆଉ ଗୋଟିଏ ଯୁଗ ।

ହେ ଗୁରୁ ! ହେ ଶିକ୍ଷାବିତ୍ ! ହେ ମନସ୍ୱୀ ସାଧକ ! ଆପଣଙ୍କୁ ଆମର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

ରିଡର, ବିଜେବି କଲେଜ
ଭୁବନେଶ୍ୱର

# ପ୍ରଫେସର ବିଧୁଭୂଷଣ ଦାସ : ଏକ ସ୍ମୃତି ଅର୍ଘ୍ୟ

***ଗଣେଶ ପ୍ରସାଦ ଦାସ***

୧୯୭୦ ମସିହା ସେପ୍ଟେମ୍ବର ବେଳକୁ ଏମ୍.ଏ ଫଳ ବାହାରିଲା । ସେ ବର୍ଷ ଦର୍ଶନ ବିଭାଗରେ ଫାଷ୍ଟ୍‌କ୍ଲାସ୍ ପୋଜିସନ୍ ମୁଁ ପାଇଥାଏ । ସେ ସମୟରେ ପରୀକ୍ଷା ଫଳ ପ୍ରକାଶିତ ହେବା ପୂର୍ବରୁ ଭଲ ପିଲାଙ୍କୁ ଡାକିନେଇ ପ୍ରାଇଭେଟ କଲେଜରେ ଚାକିରି ଦିଆଯାଉଥିଲା ଓ ଫାଷ୍ଟକ୍ଲାସ ଫାଷ୍ଟପିଲା ତୁରନ୍ତ ସରକାରୀ ଚାକିରିରେ ନିଯୁକ୍ତି ପାଉଥିଲେ ବୋଲି ଶୁଣିଥିଲି । କିନ୍ତୁ ତା ନହେବାରୁ ମୁଁ ଜଣେ ସମ୍ପର୍କୀୟଙ୍କଠାରୁ ସୁପାରିସମୂଳକ ଚିଠିଟିଏ ନେଇ ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ବିଧୁଭୂଷଣ ଦାସଙ୍କୁ ଭେଟିବା ଉଦ୍ଦେଶ୍ୟରେ ତାଙ୍କ ସରକାରୀ ବାସଭବନରେ ପହଞ୍ଚିଲି । ସେତେବେଳେ ସାରା ଓଡ଼ିଶାର ସାଧାରଣ ଶିକ୍ଷାର ସମସ୍ତ ସ୍ତର ପାଇଁ ଜଣେ ମାତ୍ର ନିର୍ଦ୍ଦେଶକ ଥିଲେ । ଅଖଣ୍ଡ କ୍ଷମତା, ଅଖଣ୍ଡ ପ୍ରତିପତ୍ତି, ଅଖଣ୍ଡ ପ୍ରତିଷ୍ଠା ଥିଲା ପ୍ରଫେସର ଦାସଙ୍କର । ନାଇଟ୍ ଡ୍ରେସ ପରିହିତ ଜଣେ ପତଳା, ଗେଡା, ଗୌରବର୍ଣ୍ଣ, ଗମ୍ଭୀର ଭଦ୍ରଲୋକ ବାହାରକୁ ଆସିଲେ । ସେ ବିଧୁଭୂଷଣ ଦାସ ହୋଇନଥିବାର ସମ୍ଭାବନା ବେଶୀ ହୋଇଥିବାରୁ ଗୋଟିଏ ସ୍ଥାନ ଖାଲି ଅଛି ଆମେ ତମକୁ ଡାକିବୁ । ବାସ୍ ସଂକ୍ଷିପ୍ତ ଭାବରେ ଏତିକି କହି ଗୋଟିଏ ସଂକ୍ଷିପ୍ତ ସ୍ମିତହାସ୍ୟ କରି ଘର ଭିତରକୁ ଚାଲିଗଲେ । ପୁନର୍ବାର ନମସ୍କାର ଜଣାଇ ଖୁବ୍ ଖୁସିରେ ଫେରିଲି ।

ଦିନ ପରେ ଦିନ, ମାସପରେ ମାସ ଗଡି ଚାଲିଲା । ନିଯୁକ୍ତି ପତ୍ର କାହିଁ ? ୧୯୭୧ ମସିହା ଜୁନ୍ ମାସରେ ଓଡ଼ିଶା ଲୋକସେବା ଆୟୋଗ ଅଧ୍ୟାପକ ଚୟନ ପାଇଁ ମୌଖିକ ପରୀକ୍ଷା କଲେ । ପ୍ରାର୍ଥୀମାନଙ୍କୁ ଖର୍ଚ୍ଚାନ୍ତ ହୋଇ କଟକ ଆସିବା ଅସୁବିଧା ଦୂର କରିବା ପାଇଁ ସେହିବର୍ଷ ଓଡ଼ିଶାର ବିଭିନ୍ନ ମଣ୍ଡଳରେ ଏହି ପରୀକ୍ଷା କରାଯାଇଥିଲା । ରମାଦେବୀ ମହିଳା ମହାବିଦ୍ୟାଳୟରେ ମୋର ପରୀକ୍ଷା ଦେବାର ଥିଲା । ସେଠାରେ ଦର୍ଶନଶାସ୍ତ୍ର ବିଶେଷଜ୍ଞ ସ୍ୱର୍ଗତ ଡକ୍ଟର ଦାମୋଦର ମିଶ୍ରଙ୍କ ସହିତ ପ୍ରଫେସର ବିଧୁଭୂଷଣ ଦାସ ବିଚାରକ ମଣ୍ଡଳୀରେ ଥିଲେ । ଦର୍ଶନବିଦ୍ୟା ସମ୍ବନ୍ଧୀୟ ପ୍ରଶ୍ନ ଡକ୍ଟର ମିଶ୍ରଙ୍କ ଅପେକ୍ଷା ବେଶୀ ପଚାରିଲେ ପ୍ରଫେସର ଦାସ । ମୋ ପାଇଁ ଏହା ପ୍ରଥମ ପରୀକ୍ଷା । ଛାନିଆ ଲାଗୁଥାଏ, ତଥାପି ଆତ୍ମପ୍ରତ୍ୟୟର ସହିତ ତାଙ୍କ ପ୍ରଶ୍ନର ଉତ୍ତର ଦେଲି । ପୁଣି ପଚାରୁଥାନ୍ତି । ସାଧ୍ୟମତେ ଉତ୍ତର କରୁଥାଏ ।

୧୯୭୧ ଜୁଲାଇ ବେଳକୁ ଆସିଲା ଅଡହକ ନିଯୁକ୍ତିପତ୍ର ଫୁଲବାଣୀରେ ଯୋଗ ଦେବା ପାଇଁ । ନୂଆ ବାହା ହୋଇଥାଏ; ସ୍ତ୍ରୀ ଭୁବନେଶ୍ୱରରେ ଚାକିରି କରୁଥାନ୍ତି । ମୋର

ଭୁବନେଶ୍ୱର୍ ବା କଟକରେ ରହିବା ଇଚ୍ଛା ଥିଲା । ପ୍ରଫେସର ଦାସଙ୍କୁ ସାକ୍ଷାତ କଲି ତାଙ୍କ ଦପ୍ତରରେ । ସଙ୍ଗେ ସଙ୍ଗେ ସଂପୃକ୍ତ କର୍ମକର୍ତ୍ତାଙ୍କୁ ଡାକି ମୋ ଆଗରେ କହିଲେ, ତାର ଏଇଟା କ୍ୟାନସଲ କରିଦିଅ । ଆଉ କାହାକୁ ଫୁଲବାଣୀ ପଠାଅ । ମୁଁ ଜାଣିଛି, ତାର ପି.ଏସ.ସି. ହୋଇ ଯାଇଛି । ସେ ଚିଠି ଆସୁ, ତା କଥା ଦେଖିବା ।'' ଉକ୍ତ ଚିଠି ଆସିଲା ଅକ୍ଟୋବରରେ । ପୋଷ୍ଟିଂ ହେଲା ଫକୀରମୋହନ ମହାବିଦ୍ୟାଳୟ, ବାଲେଶ୍ୱରରେ । ବୁଝିଲି, ଯେ ବିଧୁବାବୁ ମତେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀରେ ପୋଷ୍ଟିଂ ଦେବାକୁ ମନସ୍ଥ କରିଥିଲେ । କିନ୍ତୁ କେତେକ ଅଭାବନୀୟ ପରିସ୍ଥିତି ଯୋଗୁଁ ତାହା ହୋଇପାରିଲା ନାହିଁ । ମୁଁ ଅଗତ୍ୟା ଫକୀରମୋହନ ମହାବିଦ୍ୟାଳୟରେ ଯୋଗ ଦେଲି । ମଝିରେ ମଝିରେ ଆସି ତାଙ୍କୁ ବଦଳି ପାଇଁ ଅନୁରୋଧ ଜଣାଏ । ତାଙ୍କଠାରୁ ଶୁଣି ଦୁଃଖରେ ଫେରିଆସେ । କିନ୍ତୁ କାହିଁକି ମୁଁ ମନେ ରଖିଛି କେଜାଣି ତାଙ୍କ ଉପରୁ ମୋ ପ୍ରତ୍ୟୟ ଊଣା ହୁଏ ନାହିଁ । ଥରେ ତାଙ୍କୁ କହିଲି, ''ସାର, ମୁଁ କୌଣସି ରାଜନୈତିକ ନେତାଙ୍କୁ ମୋ ବଦଳି କଥା କହୁନାହିଁ । ଆପଣଙ୍କ ଉପରେ ନିର୍ଭର କରୁଛି ।'' ସେ କହିଲେ, ''କୌଣସି ରାଜନୈତିକ ନେତାଙ୍କୁ ବଦଳି ପାଇଁ କହିବା ଉଚିତ୍ ନୁହେଁ ।'' କାହିଁକି ତାହା କରିବି ? ଶାସନତାନ୍ତ୍ରିକ ଔଚିତ୍ୟବୋଧ ଉପରେ ତାଙ୍କର କେତେ ବିଶ୍ୱାସ, ଏଥିରୁ ତାହା ସୂଚିତ ହୁଏ । ଶାସନତାନ୍ତ୍ରିକ ବ୍ୟାପାରରେ ରାଜନୈତିକ ହସ୍ତକ୍ଷେପ ପ୍ରତି ତାଙ୍କର ଅଶ୍ରଦ୍ଧା ପାଇଁ ସେ ରାଜନୈତିକ କ୍ରୋଧର ଶିକାର ହୋଇଥିଲେ ମଧ୍ୟ । ତା ପରେ ଶୁଣିଲି ଯେ ସେ ଥରେ ଜି.ପି. ଦାସଙ୍କୁ କଟକ ଆସିବା କଥା ଫାଇଲରେ ଆଦେଶ ଦେଇଥିଲେ । ଏଥର ଅଫିସର କାଳେ ବୁଝିଲେ ସେ ଆଦେଶ ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ ଜି.ପି. ଦାସଙ୍କ ପାଇଁ । ସେ ଅବଶ୍ୟ ଥିଲେ ଭଦ୍ରକରେ । ସେ ଯା' ହେଉ, ମୋ ବଦଳି ହୋଇ ପାରିଲା ନାହିଁ ବାଲେଶ୍ୱରରୁ । ଗବେଷଣା ବୃତ୍ତି ଲାଭ କରି ହିଁ ୧୯୭୬ ଜାନୁଆରୀ ମାସରେ ବାଲେଶ୍ୱରରୁ ବାଣୀବିହାର ଆସିଲି ।

ଆଜି (୨.୬.୯୯) ବିଭାଗରେ ବସି କାମ କରୁଥିବା ବେଳେ ଜଣେ ଆସି କହିଲେ ଯେ ବିଧୁବାବୁ ଚାଲିଗଲେ, ଅଫିସ ବନ୍ଦ ହୋଇଯିବ (ସେ କିଛିକାଳ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ) । ଯଦିଓ ସେ ଦୀର୍ଘଦିନ ଧରି ପୀଡ଼ିତ ଥିବାର ମୁଁ ଜାଣିଥିଲି, ତାଙ୍କ ମୃତ୍ୟୁ ଖବରକୁ ଗ୍ରହଣ କରିପାରିଲି ନାହିଁ । ପାଟିରୁ ବାହାରି ପଡ଼ିଲା, ''ନା ମ ! ଦିନ ୩ଟାରେ ସହୀଦନଗରସ୍ଥ ତାଙ୍କର ବାସଭବନରେ ଯାଇ ପହଞ୍ଚିଲି । ତାଙ୍କ ମରଶରୀରକୁ ଖଟରେ ଶୁଆଇ ଦିଆଯାଇଥିଲା । ସେ ଅବସ୍ଥାରେ ତାଙ୍କୁ ଦେଖି ଦୁଃଖରେ ଆତ୍ମହରା ହେଲି । ଖଟ ଉପରୁ ଆଣି ବରଫ ଶେଯରେ ଶୁଆଇ ଦେବାପାଇଁ କେତେଜଣ ତାଙ୍କୁ ଟେକି ଆଣୁଥିଲେ । ମୋର ସାହାଯ୍ୟ ଆଦୌ ଦରକାର ନଥିଲେ ବି ସେଥିରେ ହାତ ଦେଲି ଓ ମୋ ବାପାଙ୍କ ଶେଷକୃତ୍ୟରେ ନିଜକୁ ନିୟୋଜିତ କଲା ପରି ଅନୁଭବ କଲି ।

ବିଧୁବାବୁ ଉତ୍କଳର ଜଣେ ଶ୍ରେଷ୍ଠ ବରପୁତ୍ର । ସେ ମୂଳତଃ ଇଂରାଜୀ ଭାଷା ସାହିତ୍ୟର ପ୍ରଫେସର ହେଲେ ମଧ୍ୟ ସବୁ ବିଷୟରେ ତାଙ୍କର ପ୍ରବେଶ ଓ ପାଣ୍ଡିତ୍ୟ ଅଗାଧ । ସେ ଥିଲେ ଜଣେ ଚଳନ୍ତି ଜ୍ଞାନକୋଷ । ସାହିତ୍ୟ, ବିଜ୍ଞାନ ଓ ଦର୍ଶନର ଚମତ୍କାର ଏକୀକରଣ ସେ କରିପାରୁଥିଲେ । ୧୯୯୭ରେ ବିଜେବି ମହାବିଦ୍ୟାଳୟରେ ଅନୁଷ୍ଠିତ ନିଖିଳ ଉତ୍କଳ ଦର୍ଶନ ପରିଷଦର ଅଧିବେଶନ ଉଦ୍‌ଘାଟନ କରିବା ପାଇଁ ତାଙ୍କୁ ଖଲ୍ଲିକୋଟ ପ୍ରାତଃ ମହାବିଦ୍ୟାଳୟର ତତ୍କାଳୀନ ଉପାଧ୍ୟକ୍ଷ ସରୋଜାନନ୍ଦ ରଥ ଓ ମୁଁ ନିମନ୍ତ୍ରଣ ଜଣାଇବା ପାଇଁ ଯାଇଥିଲୁ । ସେ ସେଥିପାଇଁ ସମ୍ମତ ହେଲେ । କିନ୍ତୁ ଆମକୁ ତାଙ୍କର ସୁଦୀର୍ଘ ସୁଗଭୀର ଅଭିଜ୍ଞତା ପରିପ୍ରେକ୍ଷୀରେ ବର୍ତ୍ତମାନର ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ସମ୍ବନ୍ଧୀୟ ଏକଘଣ୍ଟାରୁ ଊର୍ଦ୍ଧ୍ୱ ନାନାକଥା ଶୁଣାଇଲେ । ଏକ ସମୟରେ ଡଃ ରଥଙ୍କ ପାଟିରୁ ବାହାରି ପଡିଲା, 'ଆମ କଥାତ କେତେବେଳୁ ସରିଲାଣି । ଆପଣଙ୍କର ସାର୍ ଅସୀମ ଧୈର୍ଯ୍ୟ । କେତେକଥା କହିଲେଣି ।'' ଏକଥା ପଦକ ମତେ ଅବାଗ ଲାଗିଲା । ଡଃ ରଥ କିଛି ଖରାପ ଭାବି କହିନଥିଲେ । ନିରୀହ ଭାବରେ ମନ୍ତବ୍ୟ ଦେଉ ଦେଉ ଭାଷା କୁଆଡେ ଖସିଗଲା । ପ୍ରଫେସର ଦାସ ଫଟକିନା ଉଠିପଡିଲେ ଓ ଘର ଭିତରକୁ ଚାଲିଗଲେ । ଆମେ ନମସ୍କାର ଜଣାଇ ଫେରିଲୁ । ସେ ଦିନଯାକ ଓ ତା ପରେ ଅନେକ ଦିନ ପର୍ଯ୍ୟନ୍ତ ଡଃ ରଥ ସେହିକଥା ପଦକ ପାଇଁ ଅନୁତାପ କଲେ । ବିଧୁବାବୁ ନିଖିଳ ଉତ୍କଳ ଦର୍ଶନ ପରିଷଦର ଦଶମ ଅଧିବେଶନ ଉଦ୍‌ଘାଟନ କରି ଯେଉଁ ବିଦ୍‌ବତ୍ତାପୂର୍ଣ୍ଣ ଭାଷଣ ଦେଲେ ତାହା ଗଭୀର ଦାର୍ଶନିକ ଚିନ୍ତା ପ୍ରସୂତ । ସେ ଭାଷଣ ବିଷୟରେ ପରେ ଆଲୋଚନା କରିବି । ବାଣୀବିହାର ସ୍ନାତକୋତ୍ତର ଦର୍ଶନ ବିଭାଗକୁ ସେ ଏକାଧିକବାର ଆସି ଅଭିଭାଷଣ ଦେଇଛନ୍ତି । ପ୍ରତ୍ୟେକ ଥର ନୂଆ ନୂଆ କଥା କହିଛନ୍ତି ଓ ଦାର୍ଶନିକ ଗବେଷଣାର ଅନାଲୋଚିତ ଦିଗ ପ୍ରତି ଆମମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ବିଧୁଭୂଷଣ ଦାସଙ୍କ ପରି ପ୍ରଚଣ୍ଡ ପ୍ରତିଭାଧର ଜଣେ ମହାନ ପୁରୁଷଙ୍କୁ ଉତ୍କଳ ଜନନୀ ହରାଇ ଅତି ବିକଳ ହୋଇ ଯାଇଛି । କେବେ ପୁଣି ତାଙ୍କ ପରି ଜ୍ଞାନୀ, ଗୁଣୀ, ମାନୀ ସନ୍ତାନ ଉତ୍କଳ ଜନନୀର କୋଳ ମଣ୍ଡନ କରିବେ ? ମୁଁ ତାଙ୍କ ସହିତ କି ସଂସ୍ପର୍ଶରେ ବା ଆସିଛି, ତାଙ୍କ ଠାରୁ କି ଉପକାର ବା ପାଇଛି ! ସେଥିରେ ମଧ୍ୟ ପୁଅର ବାପଛେଉଣ୍ଡ ହୋଇଯିବାର ଅନୁଭବ ହୋଇଛି । ଯେଉଁମାନଙ୍କୁ ସେ ମଣିଷ କରିଛନ୍ତି, ଯେଉଁମାନେ ତାଙ୍କ ଶିକ୍ଷାଦୀକ୍ଷା ଚାକିରି ପ୍ରମୋଶନ ଆଦି ଲାଭ କରିଛନ୍ତି, ତାଙ୍କର ମନୋଦଶା ସହଜରେ ଅନୁମେୟ । ବିଧୁବାବୁଙ୍କ ବିଭୂତିମାନ ରୂପ ନେଇ ଉତ୍କଳ ଭୂଇଁରେ ଶ୍ରୀମଣ୍ଡନ କରୁ ଏପାଇଁ ଈଶ୍ୱରଙ୍କ ନିକଟରେ ବିନୀତ ପ୍ରାର୍ଥନା ।

ମୁଖ୍ୟ, ଦର୍ଶନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

# ପାର୍ବତ୍ୟ ସ୍ରୋତସ୍ୱତୀ

*ମଧୁସୂଦନ ଦାସ*

,ରେଭେନ୍‌ସା କଲେଜ ଅଫିସ ଆଗ ଦେଇ ଚାଲିଯିବାକୁ ଶଙ୍କା, ସବୁ ଶ୍ରେଣୀରେ ପଢ଼ା, ସବୁଠି କାମ ଠିକ୍‌ଠାକ୍ ଚାଲିଛି; ଷ୍ଟାଣ୍ଡ ବ୍ୟତୀତ ହତା ଭିତରେ କେଉଁଠି ହେଲେ ଗୋଟାଏ ସାଇକେଲ ନଥିବ । କାରଣ, ଅଧକ୍ଷ, ପ୍ରଫେସର ବି.ଦାସ, ବି.ଲିଟ୍ (ଅକ୍ସନ୍) । ଉଚ୍ଚଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ବି.ଦାସ ଏକଦା ରେଭେନ୍‌ସା କଲେଜ୍ ଉପାଧ୍ୟାୟର ଇଂଲିଶ ବିଭାଗ ବାର୍ଷିକ ଉତ୍ସବରେ ମୁଖ୍ୟଅତିଥି । ବରଣ କରି ନେଇଥିଲେ ପ୍ରଫେସର ଡଃ. ପ୍ରଫୁଲ କୁମାର ପତି । ଡଃ. ପତି ପରିଚୟ କରିଦେଲେ, ଗୋଲଡ ସ୍ମିଥ୍‌ଙ୍କ 'ଦ ଡେଜାଟେଡ୍ ଭିଲେଜ୍' କାବ୍ୟରୁ ଧାଡିଏ ଉଦାହରଣ ଦେଇ । ସେଥିରେ ହୃଦୟବାନ୍, ଜ୍ଞାନୀ ଗ୍ରାମ ପୁରୋହିତର ଚିତ୍ରଣ : ''Those who came to scoff remained to pray.'' (''ଯେଉଁମାନେ ପୁରୋହିତକୁ ଗାଳି ଦେବାକୁ ଆସୁଥିଲେ, ସେମାନେ ବି ପ୍ରାର୍ଥନାରେ ଲାଗିଯାଉଥିଲେ ।'' ବ୍ୟକ୍ତିତ୍ୱ ଓ ଜ୍ଞାନର ପ୍ରଭାବ ହେତୁ ।)

ସେନାପତିର ଗଢ଼ଣ, ଏଡେ ବଡ ମୁଣ୍ଡ, ବାଘ ପରି ଦାଉ ଦାଉ ଆଖି । ଜ୍ଞାନ ଚର୍ଚ୍ଚା ଭିତରକୁ ପଶିଗଲେ ଯିଏ ଅନ୍ୟମାନଙ୍କୁ ତଟସ୍ଥ କରି ଦେଇ ଅବଲୀଳା କ୍ରମେ ଅତଳ ମନ୍ଥନ କରିଥାଆନ୍ତି । ଅଧକ୍ଷ, ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଓ ବିଶ୍ୱବିଦ୍ୟାଳୟର କୁଳପତି ଆସନରେ ସାର୍‌ଙ୍କୁ ଯେଉଁମାନେ କେବଳ ପ୍ରଶାସକ ଭାବେ ଦେଖିଛନ୍ତି ନିକଟରୁ, ଆତ୍ମୀୟତାର ପରିବେଶରେ ଜାଣିବାର ଦୁର୍ଲଭ ସୁଯୋଗ ପାଇ ନାହାନ୍ତି, ସେମାନେ କେବଳ ରୁଦ୍ର ଦର୍ଶନ କରିଛନ୍ତି, ଜ୍ଞାନଭୋଳ, ଛାତ୍ରବତ୍ସଳ, ରସଗ୍ରାହୀ ଶିବଙ୍କ ପରିଚୟ ପାଇ ନଥିବେ । ଗବେଷକ ଛାତ୍ର ତାଙ୍କ ଘରେ ପହଞ୍ଚିଲେ ତ ତୁରନ୍ତ ତାଙ୍କ କାମ ମାଜିମୁଜି ସଜାଡି ଦେବାରେ ଲାଗିଯିବେ । ଲାଗିବାମାନେ ଆତ୍ମହରା ହୋଇଯିବା । ଚା କପ ଥଣ୍ଡାହେଉଥିବ ପାଞ୍ଚ ଥର ମନେ ପକାଇ ଦେଲେସୁଦ୍ଧା ହଁ, ହଁ, କହୁଥିବେ, କପ୍‌କୁ ହାତ ଯାଇ ନଥିବ । ବଳରାମ କି ରାମ ଖାଇବାକୁ ଡାକୁଥିବ, ସେ ଡାକ କାନରେ ବାଜିବାକୁ ନଥିବ । ଖାଇବା ପରେ ଜରାଗ୍ରସ୍ତ ଶରୀରର ବିଶ୍ରାମ ଲୋଡା, ଆଖି ଅବୋଲକରା ହେଉଥିବ, ଅଥଚ କହୁଥିବେ, 'ତମେ କେତେ ବାଟରୁ ଆସିଛ; ତମ କାମଟା ସାରି ଦିଏଁ ।' ମେଡାମ୍ (ପ୍ରଫେସର ଶ୍ରୀମତୀ ପ୍ରଭାତ ନଳିନୀ ଦାସ) ଘରେ ନଥିଲେ, ବିଶ୍ରାମ ପାଇଁ ଆଉ କାହା ତାଗିଦା କାହିଁକି ଶୁଣିବେ !

ଅନ୍ୟାୟରେ କେଉଁ ଅଧ୍ୟାପକଙ୍କ ବଦଳି ହୋଇଯାଇଛି ବା କାହାର ବଦଳି ନିତାନ୍ତ ଆବଶ୍ୟକ, ଉଚ୍ଚଶିକ୍ଷା ନିର୍ଦ୍ଦେଶକଙ୍କ ଦୃଷ୍ଟିକୁ ଆସିଲା, ସମସ୍ୟା ଅବିଳମ୍ବେ ସମାଧାନ ହେବ । ପ୍ରତି କଲେଜର ପ୍ରତ୍ୟେକ ଅଧ୍ୟାପକ/ଅଧ୍ୟାପିକାଙ୍କ ବ୍ୟକ୍ତିଗତ ଫାଇଲ୍ ନିର୍ଦ୍ଦେଶାଳୟରେ ପ୍ରସ୍ତୁତ ହୋଇ ରହିବ, ରେକର୍ଡ ପାଇଁ କେହି ହଇରାଣ ହେବେ ନାହିଁ । ଫାଇଲ୍ ପ୍ରସ୍ତୁତ କରାଇଥିଲେ । କଲେଜଗୁଡିକରେ ଟ୍ୟୁଟୋରିଆଲ୍ କ୍ଲାସ ହେବା ଉପରେ ଯେମିତି ଗୁରୁତ୍ୱ, ଗୁରୁ-ଶିଷ୍ୟ ବୌଦ୍ଧିକ ଓ ଆନ୍ତରିକ ସାନ୍ନିଧ ମାଧମରେ ଶୃଙ୍ଖଳାରକ୍ଷା ତଥା ଶିକ୍ଷାର ମାନବୃଦ୍ଧି ପାଇଁ ପ୍ରକ୍ଟୋରିଆଲ କ୍ଲାସ କରାଇବାରେ ମଧ ସେମିତି ଆଗ୍ରହ । ଅଧିକାଂଶ କଲେଜ ଶିକ୍ଷକଙ୍କ ଅଳ୍ପ ଶ୍ରମ ପ୍ରବୃତ୍ତି, ଟିଉସନ୍ ଉପାର୍ଜନ, ପରିଚାଳନା ସମିତି ଦ୍ୱାରା ସ୍ୱଳ୍ପ ଦରମାରେ ଶିକ୍ଷକ ନିଯୁକ୍ତି, ରାଜନୈତିକ ନେତାଙ୍କ ଯୋଗେ ଛାତ୍ରଙ୍କ ଭିତରେ ଅବଜ୍ଞା ଓ ଦାଦାଗିରି ବୃଦ୍ଧି । ସବୁ ସୁବ୍ୟବସ୍ଥାର ଅଚଳାବସ୍ଥା କ୍ଷୋଭ । ସାର୍‌ଙ୍କ ପରେ ହୁଏତ ସାତ ଜଣ ନିର୍ଦ୍ଦେଶକ ଅବସର ନେଲେଣି, କିଏ ବା ଲୋକାନ୍ତରିତ ହେଲେଣି । ଏବେ ସୁଦ୍ଧା ନାତି ଅଣନାତି ଛାତ୍ର ସ୍ତରର ନିର୍ଦ୍ଦେଶକ ବା ସଚିବ ଅବା ଛାତ୍ର-ଶିକ୍ଷାମନ୍ତ୍ରୀଙ୍କୁ କାହାର ଜରୁରି ବଦଳି ପାଇଁ ଅନୁରୋଧ କରିବାରେ ତାଙ୍କର କୁଣ୍ଠା ନଥିଲା । ବଦଳିରେ, ଟିକିଏ ଟିକିଏ କାମରେ ସୁଦ୍ଧା ଟଙ୍କା କାରବାର । ଅନୁରୋଧ ନ ରହିଲେ ମନସ୍ତାପ, କ୍ଷୋଭ, ସଙ୍କଟଗ୍ରସ୍ତ ଲୋକଟିଏକୁ ସାହାଯ୍ୟ କରି ପାରିଲେ ନାହିଁ ।

ତାଙ୍କ ଦୁଃଖ, କ୍ଷୋଭର ଅନେକ କାରଣ । ଅନେକ ସୁଧାର ହୋଇ ପାରନ୍ତା ଓଡ଼ିଶାର ଶିକ୍ଷାରେ । ଛାତ୍ର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶିକ୍ଷାମନ୍ତ୍ରୀ ଓ ଅନ୍ୟ କର୍ତ୍ତାମାନଙ୍କୁ ପ୍ରସ୍ତାବ, ପରାମର୍ଶ ଦେଲେ । କାର୍ଯ୍ୟକାରୀ କରାଗଲେ ତ ! ଓଡ଼ିଶା ପ୍ରତି ଓଡ଼ିଆ ନେତାମାନଙ୍କର, କେନ୍ଦ୍ର ସରକାରଙ୍କ ଅବଜ୍ଞା, ଅନ୍ୟାୟାତିଶଯ୍ୟ ! ବିଜୁ ପଟ୍ଟନାୟକଙ୍କ ଠାରୁ ଗୋବିନ୍ଦାଚାର୍ଯ୍ୟ, ବାଜପେୟୀଙ୍କ ପର୍ଯ୍ୟନ୍ତ ପ୍ରତିବାଦ, ପ୍ରସ୍ତାବ ଜଣେ ସ୍ୱାଭିମାନୀ, ବିଦଗ୍ଧ ଓଡ଼ିଆର । ଫଳ ଯାହା ହେଉ, ବଚନେ କିଂ ଦରିଦ୍ରତା ? ଯାହାର ଯେତିକି ସାମର୍ଥ୍ୟ, ସେତିକି ସେ କରିଛି । ଅନ୍ୟ ଦେଶର ଦୁଇ ଦୁଇଟି ସର୍ବୋଚ୍ଚ ସମ୍ମାନପ୍ରାପ୍ତ ବିଜୁ ପଟ୍ଟନାୟକଙ୍କୁ ସଭାରେ ସମ୍ବର୍ଦ୍ଧନା ଦେଲା ବେଳେ ଆଉ କିଏ କହି ପାରନ୍ତା: 'ଆପଣ ଉତ୍ତୁଙ୍ଗ ସ୍ୱାଭିମାନୀ ଓଡ଼ିଆ, ମାତ୍ର ଆଉ ଜଣେ ଏତେ ସ୍ୱାଭିମାନୀ ଏ କାଳର ଓଡ଼ିଆ ନେତା ଗଢ଼ି ପାରିଲେ ନାହିଁ ।' କ୍ଷୋଭ ତାଙ୍କର ଏ କାଳର ଅଧ୍ୟାପକ - ଅଧ୍ୟାପିକାମାନଙ୍କୁ ନେଇ କରି ନାହାନ୍ତି । ଅଧିକାଂଶ ବ୍ୟକ୍ତିଗତ ଗ୍ରନ୍ଥାଗାର ଭଲ ଭଲ ବହି ବହୁ ସଂଖ୍ୟାରେ ପଢୁନାହାନ୍ତି; ବିବିଧ କ୍ଷେତ୍ରରେ ବହି ସନ୍ଧାନ କରନ୍ତେ, ପଢ଼ନ୍ତେ ସିନା । ଯାହାର ଗ୍ରନ୍ଥାଗାର ଅଛି, ଯିଏ ପାଠକ, ସେ ତାଙ୍କର ପ୍ରିୟ । ତାଙ୍କ ନିଜର ଗ୍ରନ୍ଥାଗାର ତ ଦେଖିଲା ଭଳି; ଗୋଟିଏ ମଧମମାନର କଲେଜ ଗ୍ରନ୍ଥାଗାର ଭଳି ହେବ ।

ଶିକ୍ଷା କ୍ଷେତ୍ରରେ ଏହି ପ୍ରଚଣ୍ଡ ପ୍ରତିଭାଙ୍କର ଏକ ବ୍ୟକ୍ତିଗତ ଅବଶୋଷ । ବିଲାତରୁ ଗୋଟିଏ ଡିଗ୍ରୀ ଆଣିଥାନ୍ତେ, ବିଲାତର ସର୍ବଶ୍ରେଷ୍ଠ ବିଶ୍ୱବିଦ୍ୟାଳୟ ଅକ୍‌ସଫୋର୍ଡରୁ ଡିଗ୍ରୀ ପାଉଥିଲେ ତ ! ନା ଇଚ୍ଛା ଥିଲା, ବାରିଷ୍ଟର ହୋଇଥାନ୍ତେ । ଟଙ୍କା ଅଭାବରୁ ହୋଇ ପାରିଲେ ନାହିଁ ! ଭଲ ହେଲା । ଅନ୍ୟଥା ଶିକ୍ଷା ବିଭାଗ ରତ୍ନସ୍ପର୍ଶରୁ ବଞ୍ଚିତ ହୋଇଥାଆନ୍ତା ।

ଗାମ୍ଭୀର୍ଯ୍ୟରେ ପର୍ବତ ପରି ଯେଉଁ ସାର୍, ତାଙ୍କ ମୁହଁ ଉପରେ ହାସ୍ୟ ବ୍ୟଙ୍ଗାତ୍ମକ ଲେଖାର ପ୍ରତିକ୍ରିୟା କ୍ଷୀଣ ରେଖାରେ ହେଲେ ଫୁଟି ଉଠେ କିନା, ଜ୍ଞାନଦୀପ୍ତି ଭିତରେ ଲଘୁ ରସଗ୍ରାହିତା । ସନ୍ଧାନ ବିଡମ୍ବନା କିନା ଭାବିବାର କଥା । ଥରେ ଗୋଟିଏ ଲେଖା ପଢ଼ିବାକୁ ଦେଇ ସନ୍ତର୍ପଣରେ ତାଙ୍କ ମୁହଁକୁ ଲକ୍ଷ୍ୟ କରୁଥିଲି । ମୃଦୁ ହସ ବିହସିତ ହୋଇଗଲା । କହିଲି, 'ଆପଣଙ୍କୁ ହସେଇ ଦେଇ ପାରିଲି, ମୋର କଲମ ଧରିବା ସାର୍ଥକ ହୋଇଗଲା ।' ଧୂରୀଣ ସମାଲୋଚକ ଏତେ ଲଘୁ ରସଗ୍ରାହୀ । ସେଥିପାଇଁ ତ ହାସ୍ୟବ୍ୟଙ୍ଗ ସମ୍ରାଟ ଫତୁରାନନ୍ଦଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ କରାଇବାରେ ତାଙ୍କ ସୁପାରିଶ ସଫଳ ନହେବାରୁ ସେ ମର୍ମାହତ । ଲଘୁ ଆସରରେ ଗୁରୁଙ୍କ ରସିକତା ନ ଦେଖିଲା ଲୋକକୁ ମିଛ ମନେ ହେବ । ଥରେ ତ ସାର୍ ଜଣକ ଇଂଲିଶ ଜ୍ଞାନର ଉଦାହରଣ ଦେଲେ: ଲୋକଟିଏ ତା ନୂଆ ଘରେ ନିଜ ପାଇଁ ଓ ସ୍ତ୍ରୀ ପାଇଁ ଥିବା 'ଏପାର୍ଟମେଣ୍ଟ' (କେତୋଟି କୋଠରିଥିବା ଏକାଂଶ) ଦେଖାଇ ଅତିଥିଙ୍କୁ କହିଲା, 'This is my private part, and that is my wife's private part.'

ପର୍ବତ ଭିତରୁ ତ ନଈ ଝରେ !

ଦେହଧାରୀର ଅନ୍ତିମ ପରିଣତିକୁ କାଙ୍କ୍ଷୀସାଧକ ସାର୍ ଏମିତି ପ୍ରତୀକ୍ଷା କରୁଥିଲେ । ତାଙ୍କରି କଥା, ଏକ କ୍ଷୁଦ୍ର ଇଂଲିଶ କବିତାରେ:

Waiting
Waiting
Waiting
For death.

ପରମପୂଜ୍ୟ ଗୁରୁଜୀଙ୍କୁ କୋଟି ପ୍ରଣାମ ।

ରିଡର, ଇଂଲିଶ୍
ଆର.ଆଇ.ଏଇଚ.ଏସ୍.
ଜଲେଶ୍ୱରପୁର
ବାଲେଶ୍ୱର-୭୫୬୦୩୬

# ମୋର ଗୁରୁ ବିଧୁଭୂଷଣ ଦାସ

**ସୁର ପ୍ରସାଦ ରଥ**

ପ୍ରଫେସର ଦାସଙ୍କ ସହିତ ମୋର ସମ୍ପର୍କ ୨୫ ବର୍ଷର । ବାଣୀବିହାରରେ ଛାତ୍ର ଭାବରେ, ରିଜିଓନାଲ କଲେଜ୍ ଅଫ୍ ଏଜୁକେଶନ ଏବଂ ବି.ଜେ.ବି. କଲେଜରେ ଅଧ୍ୟାପକ ଭାବରେ ତାଙ୍କ ସଂସ୍ପର୍ଶରେ ଆସିଥିଲି । ପରେ ଡି.ପି.ଆଇ. ହେଲେ । ମୁଁ ପ୍ରଫେସର ଦାସଙ୍କର ପରିବାରର ଜଣେ ବୋଲି ନିଜକୁ ମନେ କରୁଥିଲି । ସେ ଥିଲେ ମୋର ଗୁରୁ ଓ ପରାମର୍ଶଦାତା । ମୋତେ ସବୁ କଥାରେ ଦିଗ୍‌ଦର୍ଶନ ଦେଉଥିଲେ । ମୋ ଠାରୁ କିଛି ହିଁ ଆଶା କରୁ ନଥିଲେ । ପ୍ରତିବର୍ଷ ଓଡ଼ିଶା ପରିଦର୍ଶନ କାଳରେ ମୁଁ ପ୍ରଫେସର ଦାସ ଓ ଶ୍ରୀମତୀ ଦାସଙ୍କୁ ଭେଟିବା ମୋର କର୍ତ୍ତବ୍ୟ ବୋଲି ମନେ କରୁଥିଲି । ଶ୍ରୀମତୀ ଦାସ ମଧ୍ୟ ମୋର ପ୍ରଫେସର ଥିଲେ ଏବଂ ମୋତେ ମା'ଭଳି ସ୍ନେହ କରନ୍ତି । ଗତବର୍ଷ ଗ୍ରୀଷ୍ମ ଛୁଟିରେ ପ୍ରଫେସର ଦାସ ଓ ଶ୍ରୀମତୀ ଦାସ ମୋତେ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ଆମେ ପଖାଳ, ବଡିଭଜା, ଆଳୁଭରତା ଓ ଚଟଣୀ ଖାଇଥିଲୁ । ମୋର ବ୍ୟକ୍ତିଗତ ସମ୍ପର୍କ ଯାହା ହେଉନା କାହିଁକି, ଜୀବନ ଏବଂ ସାହିତ୍ୟ ସମ୍ପର୍କରେ ସେମାନଙ୍କ ଅଧ୍ୟୟନ ଅନନ୍ୟ ।

ଗତ ଗ୍ରୀଷ୍ମ ଛୁଟିରେ ମୁଁ ପ୍ରଫେସର ସର୍ବେଶ୍ୱର ଦାସ ଏବଂ ପ୍ରଫେସର ପ୍ରଫୁଲ୍ଲ କୁମାର ପତିଙ୍କୁ ଭେଟିଥିଲି । ସେମାନେ ମଧ୍ୟ ରେଭେନ୍‌ସା କଲେଜରେ ମୋର ଅଧ୍ୟାପକ ଥିଲେ । ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଯେଉଁ ସୌହାର୍ଦ୍ଦ୍ୟ ଓ ସମ୍ମାନ ରହିଛି, ତାହା ଅସାଧାରଣ । ପ୍ରତ୍ୟେକେ ମୋତେ ପଚାରୁଥିଲେ, ମୁଁ ଅନ୍ୟମାନଙ୍କୁ ଭେଟିଛି କି ନାହିଁ, ଯଦି ଭେଟି ନଥାଏ, ଆମେରିକା ଯିବା ପୂର୍ବରୁ ସେମାନଙ୍କୁ ମୋର ଭେଟିବା ଉଚିତ୍ । ବର୍ତ୍ତମାନ ମୁଁ ଯୁକ୍ତରାଷ୍ଟ୍ର ଆମେରିକାରେ ଆମେରିକାନ୍ ଓ ବ୍ରିଟିଶ୍ ସାହିତ୍ୟର ଅଧ୍ୟାପନା କରୁଛି । ଏହି ଚାରିଜଣ ପ୍ରଫେସରଙ୍କ ଛାତ୍ର ହେବା ମୋ ସୌଭାଗ୍ୟର ବିଷୟ । ପଞ୍ଚତିରିଶ ବର୍ଷ ତଳେ ସେମାନେ ମୋତେ ଯେଉଁ ଶିକ୍ଷାଦାନ କରିଥିଲେ, ତାହା ମୋର ଏବେ ବି ସ୍ପଷ୍ଟ ସ୍ମରଣ ଅଛି । ଓଡ଼ିଶା ଠାରୁ ବାର ହଜାର ମାଇଲ ଦୂରରେ ରହି ବିଧୁବାବୁଙ୍କ ପରଲୋକ ସମ୍ବାଦ ମୋ ପାଇଁ ଏକ ଦୁଃସହ ଅନୁଭୂତି । ତାଙ୍କ ସହିତ ମୋର ସମ୍ପର୍କ ମୋ ଜୀବନର ଏକ ମୂଲ୍ୟବାନ ଅଂଶ । ସେ ତାଙ୍କର ହଜାର ହଜାର ଛାତ୍ରଛାତ୍ରୀଙ୍କ ମଧ୍ୟରେ ବହୁବର୍ଷ ଯାଏଁ ଜୀବିତ ରହିବେ । ସେ ଯେଉଁ ବିଦ୍‌ବତ୍ତା,

ମୂଲ୍ୟବୋଧ ଓ ରୁଚିବୋଧର ପ୍ରତୀକ ଥିଲେ, ତାଙ୍କର ଛାତ୍ରଛାତ୍ରୀମାନେ ତାହା ସ୍ମରଣ ରଖିବେ ବୋଲି ଆଶା କରାଯାଉ । ତାଙ୍କ ପରିବାର ବର୍ଗଙ୍କ ପାଇଁ ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

ପ୍ରଫେସର, ଇଂରାଜୀ ବିଭାଗ
ଲୁଇସିଆନା ଷ୍ଟେଟ୍ ବିଶ୍ୱବିଦ୍ୟାଳୟ
ଯୁକ୍ତରାଷ୍ଟ୍ର ଆମେରିକା



# ବିଧୁଭୂଷଣ ଓ ବିଶ୍ୱଦୃଷ୍ଟି

**ଦାମୋଦର ପ୍ରସାଦ ସିଂହ**

ପ୍ରଫେସର ବିଧୁଭୂଷଣ ଦାସ ଆଉ ଇହଜଗତରେ ନାହାନ୍ତି, କିନ୍ତୁ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ସେ ଛାଡି ଯାଇଥିବା କୀର୍ତ୍ତିରାଜି ତାଙ୍କୁ ଓଡ଼ିଶାର ଜନମାନସରେ ଚିରଦିନ ଅମର କରି ରଖିବ । ଇଂରାଜୀ ଭାଷାର ଅଧ୍ୟାପକ, ରେଭେନ୍‌ସା କଲେଜର ଅଧ୍ୟକ୍ଷ, ଓଡ଼ିଶାର ଡି.ପି.ଆଇ., ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ତଥା ଜଣେ ପ୍ରବୀଣ ଶିକ୍ଷାବିତ୍ ଭାବରେ ତାଙ୍କର ପ୍ରଗାଢ଼ ଜ୍ଞାନ, ପ୍ରଶାସନିକ ଦକ୍ଷତା ଓ ଦୂରଦୃଷ୍ଟିର ଛାପ ସୁସ୍ପଷ୍ଟ । ଅନେକ ମର୍ଯ୍ୟାଦାପୂର୍ଣ୍ଣ ଉଚ୍ଚସ୍ତରୀୟ ସରକାରୀ ଓ ବେସରକାରୀ ସଂସ୍ଥାଗୁଡିକୁ ସଭ୍ୟ ତଥା ଅଧ୍ୟକ୍ଷ ଭାବରେ ନିଜର ପାଣ୍ଡିତ୍ୟ ଓ ନିର୍ମଳ ଚିନ୍ତାଶକ୍ତି ଦ୍ୱାରା ସେ ଦିଗ୍‌ଦର୍ଶନ ଦେଇଛନ୍ତି । ଏହା ତାଙ୍କୁ ପ୍ରାଦେଶିକ ତଥା ଜାତୀୟ ସ୍ତରରେ ଅନେକ ସମ୍ମାନର ଅଧିକାରୀ କରାଇଛି ।

ରେଭେନ୍‌ସା କଲେଜର ଜଣେ ବିଜ୍ଞାନ ଛାତ୍ର ତଥା ଜଣେ ଶିକ୍ଷାକର୍ମୀ ଭାବରେ ମୁଁ ପ୍ରଫେସର ଦାସ୍ ଓ ତାଙ୍କର କାର୍ଯ୍ୟାବଳୀକୁ ଦୂରରୁ ଲକ୍ଷ୍ୟ କରିବାର ସୁଯୋଗ ପାଇଛି । କିନ୍ତୁ ପ୍ରଫେସର ଦାସଙ୍କ ସହ ସାମାନ୍ୟ ବ୍ୟକ୍ତିଗତ ପରିଚୟ ହୁଏ ୧୯୯୫ ମସିହାରେ; ଉତ୍କଳ ବିଶ୍ୱବିଦ୍ୟାଳୟ ପଦାର୍ଥ ବିଜ୍ଞାନ ବିଭାଗରେ କଲେଜ ଶିକ୍ଷକଙ୍କ ପାଇଁ ହେବାକୁ ଯାଉଥିବା ଷଷ୍ଠ ରିଫ୍ରେସର କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିବା ପାଇଁ କାର୍ଯ୍ୟକ୍ରମର ସଂଚାଳକ ଭାବରେ ଅନୁରୋଧ କରିବା ପରିପ୍ରେକ୍ଷୀରେ । କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିବା ଅବସରରେ ପ୍ରଫେସର ଦାସଙ୍କ "Modern Science and Man" ଶୀର୍ଷକ ଉଦ୍‌ଘାଟନୀ ଭାଷଣଟି ସମସ୍ତଙ୍କୁ ମୁଗ୍ଧଚକିତ କରିଥିଲା । ବକ୍ତୃତାଟି ଥିଲା ଗୋଟିଏ ଜ୍ଞାନଦୀପ୍ତ ବ୍ୟକ୍ତିତ୍ୱର ସମୁଜ୍ଜ୍ୱଳ ସ୍ୱାକ୍ଷର; ଇଂରାଜୀରେ କହିଲେ- A masterpiece । ବକ୍ତୃତାର ବ୍ୟାପ୍ତି ଥିଲା ବୈଦିକ ଯୁଗଠାରୁ ଆଧୁନିକ ବିଜ୍ଞାନର ଯୁଗ ପର୍ଯ୍ୟନ୍ତ, ଉପନିଷଦ ଠାରୁ Unified field theory ପର୍ଯ୍ୟନ୍ତ । ଜଣେ ଇଂରାଜୀ ସାହିତ୍ୟର ଶିକ୍ଷକ ଓ ଗବେଷକ ପକ୍ଷରେ ଏହାଥିଲା ବିଜ୍ଞାନର ଗଭୀରତମ ତତ୍ତ୍ୱର ଅନନ୍ୟ ବିଶ୍ଳେଷଣ । ପ୍ରଫେସର ଦାସଙ୍କ ଶିକ୍ଷାନୁରକ୍ତି, ଜ୍ଞାନପିପାସା ତଥା ଉଚ୍ଚଚିନ୍ତାଶକ୍ତିର ଏହି ବକ୍ତୃତାଟି ଥିଲା ସୁନ୍ଦର ନିର୍ଯ୍ୟାସ ।

ଯୁବ ଶିକ୍ଷକମାନଙ୍କୁ ଭେଟିବାର ଆଶା ନେଇ କହିଲେ, "I accepted the invitation in order to have an opportunity of meeting young

teachers who are in charge of formation of what is called human capital on which will depend the development and prosperity of our country in future. ''

ଶିକ୍ଷକମାନଙ୍କ ଚାରିତ୍ରିକ ଶୁଦ୍ଧତାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇ ସେ କହିଲେ, ''....The success of such efforts (refresher courses) will ultimately depend on the essential qualities of honesty and integrity in the academic community without which our achievements will be in spurts and jets and not a sustained striving after excellence which is the hallmark of proper human resource development in the modern world. ''

ଧୀରେ ଧୀରେ ବକ୍ତବ୍ୟକୁ ଆଗେଇ ନେଇ ' reality ' ବିଷୟରେ ଆଧୁନିକ ଚିନ୍ତାଧାରାର ଅବତାରଣା କରି ସେ କହିଲେ, '' Unless we fall back on the nature of reality which is not something out there in the realm of sensory perception but a part of total process of observation, experimentation and conceptualisation from an angle that challenges the cartesian bifurcation of mind and matter, the new concept of reality, the integral relationship between explicate order and the implicate order as Bohm points out is likely to elude us, the laymen. Modern Physics is no longer confined to the Artistotelian concept of physik as distinct from metaphysik but an embracing of both in which, as Ken Wilber points out, in his fascinating book "The Atman Project", reality is a creation of human consciousness or the shadows of human mind as Penrose points out." XXX "Thus, these changes in our conception of reality are affecting contemporary thought both in science and arts producing a kind of future shock or consciousness of chaos in place of order. If order is to emerge out of this chaos or dissipative structures, as Ilya Prigogine would call it, we have to modify some of our pet notions about order and reality; to forget that what can be inspected sensorially is only real or a fact."

ବିଜ୍ଞାନରୁ ସୃଷ୍ଟି ହେଉଥିବା ମୁକ୍ତ ମାନସିକତାର ପ୍ରଭାବ ବିଷୟରେ ସେ କହିଲେ, " The choice of alternate models or paradigms affect the scientific imagination but they will not be able to make an ontological claim, a point that is corroborated by Paul.

Feyerabend in Against Method "wherin he describes science as a n essentially anarchistic enterprise. XX F.J. Tipler's The physics of immortality" is a breathtaking exposition of this line of anarchistic enterprise. The effect of such a view point can be seen in the humanities and social sciences today where rejection of every system of totalisation is in vogue and progress is attributed to independent development of parts of any system. The fallout of such a thought was anticipated by W.B.Yeats in h is famous line" mere anarchy is let loose upon the world."

ପଦାର୍ଥ ବିଜ୍ଞାନର ନିଗୁଢ଼ ତତ୍ତ୍ୱର ବ୍ୟାଖ୍ୟା କରି ସେ କହିଲେ, " When we come across a concept like the field of force we find it difficult to accept it as 'real' from our commonsensical view point. We can not see it to believe it but great scientists like Einstein have conceived of a unified field theory and success of Weinberg, Salam and Glashow to unify electromagnetic and weak nuclear forces has opened up the possibility of the unification of the three interactions into one someday in future. This has become possible because of the realisation that science no longer deals in 'truth' but in 'possibility', thereby dissociating it from the conception of 'fact' confined to evidence of the 'senses' X X X "David Bohm points out that every particle in the Universe is connected with every other for which in the experiment of Allain Aspect two electrons in the different parts of the Universe behaved indentically. It is this yet unknown mode of communication that is being investigted by psychologists like Ken Wilber who hypostatise total interrelatedness of human consciousness and the Universe. Ruppert Sheldrake's theory of a morphogenic field in the world of biology points in the same direction. It is this interrelatedness of every part of the Universe that has made us accept the space around us as not empty but full though invisible beautifully echoing the thought of the Upanishad,

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣ ମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ''

ଆଧୁନିକ ଯନ୍ତ୍ର ସଭ୍ୟତାର ମଣିଷର ନିଃସଙ୍ଗତାକୁ ଲକ୍ଷ୍ୟ କରି ସେ କହିଥିଲେ, " It is these glimpses of a new reality that are expected to constitute a new "weltanschauung" ( ବିଶ୍ୱଦୃଷ୍ଟି) in the future to redeem the fate of modern man who has been cripled, catined and confined in a universe, the meaning of which he cannot understand owing to his sundering from the sacred complex of God- Nature-Man and for that failure he runs after false goods of every shape and size. It is this homeless mind of man, a man in search of a soul that is primarily responsible for the predicament of living in a society dominated by applied science or technology as an object or statistical number, a positive victim of pervasive alienation, rootlessness, anomie and dehumanisation in all walks of life. This is the meaning of Toynbee's "Civilisation on trial". That trial is being conducted in Kafka's Castle."

ଶେଷରେ ଥିଲା ଏହି ଯୁଗଯନ୍ତ୍ରଣାରୁ ମୁକ୍ତିର ଆହ୍ୱାନ; " It is the scared task of all scientists especially those in the discipline of physics and life-science to comprehend the crisis of our age from this angle and to work towards the development of a culture based on "weltanschauung" in which the technological imperative will not subvert the categorical imperative.".

ଆଧୁନିକ ବିଜ୍ଞାନର ଦର୍ଶନ ଓ ଦଂଶନଜନିତ ଗୋଲକଧନ୍ଦା ଭିତରେ ମଣିଷର ସାମାଜିକ, ମାନସିକ ଓ ଆଧ୍ୟାତ୍ମିକ ସ୍ଥିତିରେ ଉଦ୍‌ବେଳନର ଯେଉଁ ଏକ ବିଶ୍ୱଦୃଷ୍ଟି ଆଧାରିତ ସୁନ୍ଦର ସାରଗର୍ଭକ ଆଲୋଚନା ଉପରୋକ୍ତ ଉଦ୍ଧୃତାଂଶ ଗୁଡିକରେ ଦେଖିବାକୁ ମିଳେ, ତାହା କେବଳ ଗୋଟିଏ ଏକାଧାରରେ ଗଭୀର, ପରିପୁଷ୍ଟ ଓ ପରିବ୍ୟାପ୍ତ ମାନସିକତାରୁ ହିଁ ସୃଷ୍ଟି ହୋଇପାରେ । ଏହାହିଁ ପ୍ରଫେସର ଦାସଙ୍କୁ କରିଥିଲା ଅସାଧାରଣ ଓ ଅନନ୍ୟ ।

ଏହି ବକ୍ତୃତାଟିକୁ Orissa Physical Society ର ମୁଖପତ୍ରରେ ଛପାଇବାର ପ୍ରଚେଷ୍ଟା ମଧ୍ୟରେ ମତେ କେତେଥର ପ୍ରଫେସର ଦାସଙ୍କ ପାଖକୁ ଯିବାର ସୁଯୋଗ ମିଳିଥିଲା । ସବୁବେଳେ ମନରେ ଡରଥାଏ ଯେ ତାଙ୍କର ବହୁମୂଲ୍ୟ ସମୟ ଉପରେ ହୁଏତ ମୁଁ ଅହେତୁକ ଅନୁପ୍ରବେଶ କରିଛି ପରା । କିନ୍ତୁ ତାଙ୍କର ଛାତ୍ରଙ୍କ ଛାତ୍ର ତୁଲ୍ୟ ହେଲେ ମଧ୍ୟ ସବୁଥର ପାଇଛି ମଧୁର ସ୍ନେହପୂର୍ଣ୍ଣ ବ୍ୟବହାର ଓ ଅନେକ ପ୍ରେରଣା । ଶିକ୍ଷା, ସାହିତ୍ୟ, ବିଜ୍ଞାନ ଓ ସାମାଜିକ ତତ୍ତ୍ୱ ଇତ୍ୟାଦି ବିଷୟରେ କ'ଣ କ'ଣ ନୂଆ ବହି ବାହାରୁଛି ଓ ସେ ସବୁଥିରେ ଆଲୋଚନାର ମୁଖ୍ୟ ବିଷୟ କ'ଣ ସେ

[illegible]ର ସେ ଥିଲେ ସତେ ଯେପରି ଏକ ଚଳନ୍ତି ଅଭିଧାନ । ବୈଜ୍ଞାନିକ ଚିନ୍ତାଧାରା ପ୍ରତି ନିଜର ଅନୁରାଗ ବିଷୟରେ ସୂଚାଇବାକୁ ଯାଇ ସେ ଉପରୋକ୍ତ ବକ୍ତୃତାରେ କହିଥିଲେ, ".....My interest in these developments in science issues from its impact on the sensibility of writers and artists. This point was made succintly by Wordsworth when he said that poetry is the breath and finer spirit of all knowledge which is in the countenance of all science. How relevant that utterance is can be seen from Eliot's lines,

Time present and time past
Are both perhaps present in time future
And time future contained in time past
If all time is eternally present
All time is unredeemable."

ଜ୍ଞାନ ପିପାସା ଥିଲା ତାଙ୍କ ବ୍ୟକ୍ତିତ୍ୱର ସ୍ୱାକ୍ଷର; ବୟସ ମଧ୍ୟ ତା' ପାଖରେ ହାର ମାନିଥିଲା । ଏହିପରି ଭାବରେ ପ୍ରଫେସର ଦାସଙ୍କ ସହ ମୋର ପରିଚୟ ସ୍ୱଳ୍ପ ହେଲେ ମଧ୍ୟ ଅବିସ୍ମରଣୀୟ ।

ଗଭୀର ଅଧ୍ୟୟନ ଓ ଚିନ୍ତନପ୍ରସୂତ ଥିଲା ତାଙ୍କର ଏକ ବିଶ୍ୱଦୃଷ୍ଟି । ସେହି ଦୃଷ୍ଟିକୋଣରୁ ଓଡ଼ିଶା ଓ ଓଡ଼ିଆର ପ୍ରଗତି ବିଷୟରେ ସେ ଥିଲେ ସ୍ୱପ୍ନବିଭୋର । ଭଲକଥା ଓ ଭଲକାମ, ଯେତେ ସାମାନ୍ୟ ହେଲେ ବି, ଲାଭକରୁଥିଲା ତାଙ୍କର ପ୍ରେରଣା ଓ ଆଶୀର୍ବାଦ । ଏଭଳି ଜଣେ ବ୍ୟକ୍ତିଙ୍କ ବିୟୋଗରେ ଓଡ଼ିଶାର ଶିକ୍ଷା, ସାହିତ୍ୟ ତଥା ବୌଦ୍ଧିକ କ୍ଷେତ୍ରରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା, ଏହା ବହୁଦିନ ଧରି ଯେ ଓଡ଼ିଆ ମାନସିକତାକୁ ଭାରାକ୍ରାନ୍ତ କରିବ, ଏହା ନିଃସନ୍ଦେହ ।

ସେହି ପ୍ରଜ୍ଞାଦୀପ୍ତ ବ୍ୟକ୍ତିତ୍ୱକୁ ମୋର ଭକ୍ତିପୂତ ପ୍ରଣାମ ।

ପଦାର୍ଥ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

# ଅତୀତ ସ୍ମୃତିରୁ ପୃଷ୍ଠାଏ

***ଶଶିଭୂଷଣ ମିଶ୍ର***

ଯାଜପୁର ଟାଉନ୍ ନିକଟବର୍ତ୍ତୀ ଏନ.ସି.କଲେଜ ପାଖ କମାଗଡରେ ବିଧୁର ଏବଂ ସେହି ଟାଉନ୍‌ର ସପନପୁରରେ ମୋ ଜନ୍ମ । ବୟସ ଆମର ପ୍ରାୟ ସମାନ । ସନାମଧାରୀ 'ବିଧୁଭୂଷଣ' 'ଶଶିଭୂଷଣ' । ଆମ ଦୁଇ ପରିବାରର ଯୋଗସୂତ୍ର ହେଉଛନ୍ତି ମୋ ପୁଣ୍ୟଶ୍ଳୋକ ଜେଜେ ବାପା ସ୍ୱର୍ଗତଃ ପଣ୍ଡିତ ନୀଳମଣି ମିଶ୍ର । ବିଧୁର ବାପା ସ୍ୱର୍ଗତଃ ରାୟ ବାହାଦୂର ଦୁର୍ଗାଚରଣ ଦାସଙ୍କର ସେ ଥିଲେ ପିତୃକଳ୍ପ ଗୁରୁ । ସେ ଆମ ଦୁହିଁଙ୍କ ନାମ କରଣ କରିଥିଲେ । ତା ସତ୍ତ୍ୱେ ୧୯୩୮ ଜୁଲାଇରେ ରେଭେନ୍‌ସା କଲେଜରେ ଭର୍ତ୍ତି ହେବା ପୂର୍ବରୁ ଆମର ପରିଚୟ ହୋଇନଥିଲା । ପାଟନା କଲେଜରେ ଏମ୍.ଏ ପଢ଼ିବା ସମୟରେ ଆମେ ଦୁହେଁ ଗଙ୍ଗା ତୀରବର୍ତ୍ତୀ ମହେନ୍ଦ୍ର ଘାଟରେ ପି.ଜି ଛାତ୍ରବାସର ଅନ୍ତେବାସୀ ଥିଲୁଁ । ସମ୍ପର୍କ ଦୃଢ଼ତର ହେଲା । ୧୯୪୩ ଡିସେମ୍ବର ମାସରେ ପାଟନା ମେଡିକାଲ କଲେଜ୍ ଡାକ୍ତରଖାନରେ ମୋ ହାର୍ନିଆ ଅସ୍ତ୍ରୋପଚାର ବେଳେ ବିଧୁ ଓ ମୋ ଅନ୍ୟ ବନ୍ଧୁମାନେ ହିମାଳୟ ପାଦ ଦେଶର ସେ ହାଡଭଙ୍ଗା ଶୀତରେ ମୋ ଶୁଶ୍ରୂଷା କରିବାକୁ କେତେ ରାତି ଅନିଦ୍ରା ହୋଇ ନଥିବେ ? ମୁଁ ବାପାଙ୍କୁ ନ ଜଣାଇ ସେ ଅପରେସନ କରିଥିଲେ ହେଁ ବାପା କେଉଁଠାରୁ ଖବର ପାଇ ମୋ ପାଖକୁ ଟେଲିଗ୍ରାମ କରିଥିଲେ । ବିଧୁ ତାହାର ଉତ୍ତର ଟେଲିଗ୍ରାମରେ ତାଙ୍କୁ ଜଣାଇଥିଲା- ମୁଁ ଭଲ ଅଛି । ବ୍ୟସ୍ତ ହେବ ନାହିଁ । ଅବଶ୍ୟ ସବୁ କିଛି ନମାନି ବାପା ପାଟନାକୁ ଯାଇଥିଲେ । ପରେ ମୁଁ ଏସବୁ ବିଧୁ ଠାରୁ ଶୁଣିଲି ।

ବିଧୁର ଭାଇମାନଙ୍କ ଭିତରୁ ଯାମିନୀ ଅବସରପ୍ରାପ୍ତ ଇଲେକ୍ଟ୍ରିକାଲ ଚିଫ୍ ଇଞ୍ଜିନିୟର ମୋ ତଳ କ୍ଲାସରେ ପଢୁଥିଲେ ହେଁ ରେଭେନ୍‌ସା କଲେଜ୍‌ର ପଶ୍ଚିମ ଛାତ୍ରବାସରେ ଆମେ ଏକା ରୁମ୍‌ରେ ଅନେକ ଦିନ ଥିଲୁଁ । ତାଙ୍କ ଆର ଭାଇ ଗୌରୀ କେଉଁଝର ଜିଲ୍ଲା କୃଷି ଅଫିସର ଭାବରେ ଏବଂ ଅନ୍ୟ ଜଣକ ରବିନାରାୟଣ (ଅବସର ପ୍ରାପ୍ତ ଚିଫ୍ ସେକ୍ରେଟାରୀ) କେଉଁଝର କଲେକ୍ଟର ଭାବରେ ଭିନ୍ନ ଭିନ୍ନ ସମୟରେ ଆମ ପାରିବାରିକ ସମ୍ପର୍କ ଅତୁଟ ରଖିଥିଲେ । ସେମାନଙ୍କ ବାପା ଦୁର୍ଗାଚରଣ ବାବୁ ଆଇ.ଏ.ଏସ୍ ରୂପେ ବହୁ ଉଚ୍ଚ ପଦବୀରେ ରହି ଶେଷ ସେଣ୍ଟ୍ରାଲ୍ ଡିଭିଜନ୍‌ରେ କମିସନର ପଦରୁ ଅବସରଗ୍ରହଣ କଲେ । ସେମାନେ କଟକ କୁକୁରିଆ ପଦାରେ ଗୋଟିଏ ବଡ଼ ଘର ଭଡା ନେଇ ରହୁଥିବା ବେଳୁ ମୁଁ ବହୁବାର ସେଠାକୁ ଯାଇଛି ।

ମାଉସୀଙ୍କ ସଂସ୍ପର୍ଶରେ ଆସି ନିଜକୁ ଧନ୍ୟମନେ କଲି । ତାଙ୍କ ରୂପ ଓ ଗୁଣର ପଟାନ୍ତର ନାହିଁ । ଦେହ ତପ୍ତକାଞ୍ଚନ ବର୍ଣ୍ଣ ଏବଂ ସେହି ଅନୁପାତରେ ତାଙ୍କର ବ୍ୟକ୍ତିତ୍ୱ ଓ ମାତୃତ୍ୱର ପରିପ୍ରକାଶ । ସେ ଘରକୁ ଯାଇ ମୁଁ କେବେ ଖାଲି ପେଟରେ ଫେରିନାହିଁ । ବିଧୁ ପାଖକୁ ପାଟନାକୁ କେବେ ମିଷ୍ଟାନ୍ନ ପ୍ରଭୃତି ପଠାଇଲେ ଶଶୀ କଥା ଭୁଲି ନାହାନ୍ତି । ତାଙ୍କ ନିର୍ଦ୍ଦେଶରେ ମୁଁ ତାହାର ଭାଗୀଦାର ହୁଏ । ଦୁନିଆରେ କ'ଣ ସବୁ ମାଆ ଏକ ଢ଼ାଞ୍ଚାରେ ଗଢ଼ା ? ନହେଲେ ମାଉସୀ ଏ ପେଟୁ ପୁଅଟିର ଗୁଣ କିପରି ଜାଣନ୍ତେ । 'ନହିମାତା ସମୁପେକ୍ଷତେ ସୁତଃ' (ଶଙ୍କରାଚାର୍ଯ୍ୟ) ।

ଥରେ ମାଉସୀଙ୍କୁ ଆମ କେଉଁଝର ଘରେ ଦେଖି ତଟସ୍ଥ ହୋଇପଡିଲି । ସେ ପୁଣି ଏଠାକୁ କିପରି ଓ କାହିଁକି ଆସିଲେ ? କିଛି ପଚାରିବା ଆଗରୁ ସେ କହିଲେ, 'ଶଶୀ, ମୁଁ ଏ ବାଟ ଦେଇ ବୁଢ଼ା ପାଖକୁ ରାଞ୍ଚିକୁ ଯାଉଛି । ତୁମେ ସବୁ କିପରି ଅଛ ଦେଖିବାକୁ ଆସିଲି ।' ବିଧୁ ସେତେବେଳେ ରାଞ୍ଚି କଲେଜରେ ଅଧ୍ୟକ୍ଷ । ଆମ ଦୁଇ ପରିବାରର ବନ୍ଧନ ଏହିପରି ।

ବିଧୁଠାରୁ ଶୁଣିଛି, ସେ ତଳ କ୍ଲାସରେ ଇଂରେଜୀ ପଢ଼ିବା ଆରମ୍ଭ କଲାବେଳେ ମୋ ଜେଜେବାପା ତାହାର ଇଂରେଜୀ ଭାଷାର ଜ୍ଞାନ ପରୀକ୍ଷା କରିବାକୁ ଯାଇ ତାକୁ 'King' ର adjective ପଚାରିଥିଲେ । ବିଧୁ ଚଟ୍ କରି କହିଲା । 'Regal' ତାହାଶୁଣି ବୁଢ଼ା ଅତି ପ୍ରୀତ ହୋଇ ତାକୁ କହିଲେ, ଇଂରେଜୀ ସାହିତ୍ୟରେ ତୁ ଅଦ୍ୱିତୀୟ ହେବୁ । ତାଙ୍କର ଏ ଆନ୍ତରିକ ଆଶୀର୍ବାଦ ବିଧୁ ଶେଷ ପର୍ଯ୍ୟନ୍ତ ମନେ ପକାଉଥିବାର ମୁଁ ଶୁଣିଛି । କାଠମାଣ୍ଡୁ, କନ୍ୟାକୁମାରୀ, ରାଞ୍ଚି ସବୁଆଡେ ସେ ସମ୍ମାନାର୍ହ । ଇଂରେଜୀରେ ତା ବକ୍ତୃତା ଅନେକ ଥର ଶୁଣିଛି । ଶେଷଥର ବୋଧହୁଏ ୪/୫ ବର୍ଷ ତଳେ । ୧୯୩୮ରେ ମାଟ୍ରିକ୍ ପାଶ କରି ରେଭେନ୍ସା କଲେଜରେ ଭର୍ତ୍ତି ହୋଇଥିବା ବେଳେ ପୁରାତନ ବନ୍ଧୁଙ୍କର ଉତ୍କଳ ବିଶ୍ୱବିଦ୍ୟାଳୟ Anthropology Dept.ରେ ଗୋଟିଏ ମିଳନୀ ହୋଇଥିଲା । ତହିଁରେ ତା ଭାଷଣ ସମସ୍ତଙ୍କୁ ଚମତ୍କୃତ କଲା ।

ସଂସାରର ଏତେ ଜଞ୍ଜାଳ, ରୋଗବ୍ୟାଧି ଓ ଉତ୍‌ଥାନ ପତନ ବିଧୁର ଜ୍ଞାନ ଲିପ୍ସାକୁ ମଳିନ କରିନଥିଲା । ଥରେ ତାର ସହିଦ୍ ନଗର ଘରକୁ ମୁଁ ଓ ମୋ ସ୍ତ୍ରୀ ଶାନ୍ତି ବୁଲିବାକୁ ଯାଇଥିଲୁଁ । ତାହାର ଲାଇବ୍ରେରୀରେ ଗଚ୍ଛିତ ପୁସ୍ତକର ସଂଖ୍ୟା ଓ ବ୍ୟାପକତା ଦେଖି ଚକିତ ହେଲି । କେତେ ଭିନ୍ନ ବିଷୟରେ ବହିସବୁ । ଦୁଃଖ ଲାଗିଲା- ସେ ସବୁର ରକ୍ଷଣାବେକ୍ଷଣ କିପରି ହେବ ବୋଲି ଚିନ୍ତା କରି । ଏ ଅମୂଲ୍ୟ ସମ୍ପଦକୁ ମର୍ଯ୍ୟାଦା ଦେବା ପାଇଁ ଯେପରି ମର୍ଯ୍ୟାଦାବନ୍ତ ଲୋକ ଥିବା ଦରକାର । କିନ୍ତୁ ତାଙ୍କ ସହଧର୍ମିଣୀ ବିଦୁଷୀ ପ୍ରଭାତ ନଳିନୀଙ୍କୁ ଦେଖି ଆଶ୍ୱସ୍ତ ହେଲି । ଉତ୍ତର ସାଧକ ରୂପେ ଶ୍ରୀମତୀ ପ୍ରଭାତନଳିନୀ ଏହାର ସଂରକ୍ଷଣକରି ତାକୁ ଋଦ୍ଧିମନ୍ତ କରିପାରିବେ ମୋର ବିଶ୍ୱାସ ।

'ଇଂରାଜୀରେ ଏତେ ପଟୁତା ଥାଇ ମଧ୍ୟ ବିଧୁ ଓଡ଼ିଆ ଭାଷାରେ ଏତେ ବିଶାରଦ ବୋଲି ମୁଁ ଜାଣି ନଥିଲି । ଦେଖିଛି, ଅନେକ ପଦସ୍ଥ ବ୍ୟକ୍ତି ଓଡ଼ିଆରେ ଧାଡିଏ ଲେଖିପାରନ୍ତି ନାହିଁ । କାରଣ ସେମାନେ ଅନଭ୍ୟସ୍ତ । ସେ ସବୁ ଏତେ ଉଚ୍ଚଦରର, ତାହା ନ ପଢ଼ିବା ଲୋକ ବିଶ୍ୱାସ କରିପାରିବେ ନାହିଁ । ଏପରି ଜଣେ ବନ୍ଧୁବତ୍ସଳ ଓ ଛାତ୍ରବତ୍ସଳ ବ୍ୟକ୍ତିଙ୍କୁ ହରାଇ ଆମେ ଦୁଃଖିତ । ଅଗଣିତ ଛାତ୍ରଛାତ୍ରୀଙ୍କ ଗୌରବ ଟିକା ବହନ କରି ବିଧୁ ନିଶ୍ଚୟ ଗର୍ବିତ ।

ଲେଖିବାକୁ ବହୁତ ଅଛି । କିନ୍ତୁ କାଳ ସୀମିତ । ବିଧୁ ! ତୁମେ ଓ ତୁମ ପରି ଆଉ କେତେକ ବନ୍ଧୁ ଗୋଟି ଗୋଟି କରି ବିଦାୟ ନେଲଣି । ମୋର ଏ ପରିଣତ ବୟସରେ ଏସବୁ ଦେଖି ଗୋଟିଏ ଭାବନା ମନକୁ ଆସେ

ବୟଂ କ୍ଷେଭ୍ୟୋ ଜାତାଶ୍ଚିରତରଗତା ଏବ ଖଳୁତେ<br>
ସମଂଯେ ସଂବୃଦ୍ଧାଃ ସ୍ମରଣ ପଦବୀଂତେଽପିଗମିତା ।<br>
ଇଦାନୀମେତେସ୍ମଃ ପ୍ରତିଦିବସ ମାସନ୍ନପତନା<br>
ଗତାସ୍ତୁଲ୍ୟାବସ୍ଥାଂ ସିକତିଳନଦୀ ତୀର ତରୁଭିଃ ।।

ମୋ ସଙ୍ଗରେ ଯେଉଁମାନେ ଜନ୍ମ ହୋଇଥିଲେ, ସେମାନେ କେଉଁକାଳରୁ ଏ ପୃଥିବୀରୁ ବିଦାୟ ନେଲେଣି । ମୋ ସମବୟସ୍କ ଆଉ କେତେକଙ୍କର ନାମ ମାତ୍ର ଅବଶିଷ୍ଟ ଅଛି ସେମାନଙ୍କୁ ଦେଖିବା ଦୂରର କଥା, କେବଳ ତାଙ୍କୁ ସ୍ମରଣ କରେଁ । ନଦୀର ବାଲି ଅତଡା ଉପରେ ଠିଆହୋଇଥିବା ଗଛପରି ବର୍ତ୍ତମାନ ମୋ ଅବସ୍ଥା । କେତେବେଳେ ଖସିପଡିବ, କିଏ ଜାଣେ ?

ଆଡଭୋକେଟ୍, କେଉଁଝର



# ଓଡ଼ିଆ ଜାତିକୁ ପ୍ରାଣଭରି ଭଲ ପାଉଥିବା ଜଣେ ମଣିଷ : ପ୍ରଫେସର ଦାସ

*ଅବନୀ ବରାଳ*

ପ୍ରଫେସର ବିଧୁଭୂଷଣ ଦାସଙ୍କୁ ସାରା ଦେଶର ଜଣେ ପ୍ରଥିତଯଥା ଶିକ୍ଷାବିତ୍, ଶିକ୍ଷକ, ଶିକ୍ଷା ନିର୍ଦ୍ଦେଶକ, କୁଳପତି, ସିଣ୍ଡିକେଟ୍ ସଦସ୍ୟ, ବହୁ ସର୍ବଭାରତୀୟ ତଥା ପ୍ରାଦେଶିକ ଶିକ୍ଷା ସମ୍ପର୍କିତ କମିଟି କମିଶନମାନଙ୍କର ଅଧକ୍ଷ/ସଭ୍ୟ/ସଂଯୋଜକ ଅଥବା ଜଣେ ଅଗାଧ ପାଣ୍ଡିତ୍ୟ ଓ ପ୍ରଜ୍ଞାର ଅଧିକାରୀ, ଭାବରେ ତାଙ୍କର ସହକର୍ମୀ, ଛାତ୍ରଛାତ୍ରୀ ସଭିଏଁ ପ୍ରାୟ ଜାଣନ୍ତି ।

କିନ୍ତୁ ପ୍ରଫେସର ଦାସଙ୍କ ଭିତରେ ଯେ, ପ୍ରଚଣ୍ଡ ଓଡ଼ିଆ ସ୍ୱାଭିମାନୀ ବ୍ୟକ୍ତିତ୍ୱ ଲୁଚି ରହିଥିଲା, ତାହା ହୁଏତ ଅନେକଙ୍କୁ ଅବିଦିତ ଥିବ । ପ୍ରଫେସର ଦାସ କାୟମନୋବାକ୍ୟରେ ଚାହୁଁଥିଲେ ଓଡ଼ିଆ ଜାତିର ସାର୍ବିକ ଉନ୍ନତି ଓ ଅଗ୍ରଗତି ଏବଂ ଏଥିପାଇଁ କୌଳିକତା ଓ ବିଚକ୍ଷଣତା ସମ୍ପନ୍ନ କୌଣସି ଓଡ଼ିଆ ଯଦି ତା ସ୍ଥାନ ହାସଲ ନକରିପାରୁଥାଏ , ସେ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ ହୁଅନ୍ତି । ମନରେ ତାଙ୍କର ଗଭୀର ଅଭିମାନ, ଓଡ଼ିଆ ଜାତିକୁ ଏ ପର୍ଯ୍ୟନ୍ତ ଯଥାର୍ଥ ସ୍ଥାନ ମିଳିନାହିଁ ବୋଲି !

ଆଜୀବନ ଶିକ୍ଷକତାକୁ ବୃତ୍ତି ହିସାବରେ ଅବଲମ୍ବନ କରି, ଶିକ୍ଷକ ସଂଗଠନ, ଶିକ୍ଷକ ଆନ୍ଦୋଳନ କରି କରି ଅବସର ନେଲାପରେ, ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରି, କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ସମ୍ପାଦକ ହେଲାପରେ, ଅନେକ ସାଥୀ, ଆତ୍ମୀୟ ସ୍ୱଜନ ମୋର ଏ ରୂପାନ୍ତରକୁ ନାପସନ୍ଦ କରିଛନ୍ତି । ଗୋଟିଏ  ଦିଓଟି ସମ୍ବାଦପତ୍ର ତ ବିରୁଦ୍ଧରେ ଲେଖିଛନ୍ତି । କିନ୍ତୁ ମୋତେ ବିସ୍ମିତ କରି, କମ୍ୟୁନିଷ୍ଟ ପାର୍ଟି, ସଂପାଦକ ହେଲି ବୋଲି ତଥା ଜଣେ ଓଡ଼ିଆ ପିଲା, କମ୍ୟୁନିଷ୍ଟ ପାର୍ଟିର ମଧ ଜାତୀୟ କାର୍ଯ୍ୟକାରୀ କମିଟି ଆଗରେ ରହିବା ଫଳରେ, ସର୍ବଭାରତୀୟ ପରିଚିତ ପାଇଲି ବୋଲି, ଅଭିନନ୍ଦନ ଜଣାଇ, ସାର ଏକ ବାର୍ତ୍ତା ମୋ ପାଖକୁ ପଠାଇଲେ । ଆହୁରି ବିସ୍ମିତ ହେଲି, ମୋତେ ଫୋନ୍‌ରେ ଡାକି, ସାରାଜୀବନ ତାଙ୍କ ସହିତ ଆଲୋଚନା କରୁଥିବା, (ଅତୀତରେ ସାର୍‌ଙ୍କ ସହିତ ଏଥିପାଇଁ, ଶିକ୍ଷକ ମହାସଂଘ ପକ୍ଷରୁ ଯୁକ୍ତିତର୍କ ହୋଇଥିବା) ଶିକ୍ଷା ବିଷୟରେ ଆଦୌ କିଛି କଥା ନଉଠାଇ, କହିବାକୁ ଆରମ୍ଭ କଲେ, ''ଏଥର ଓଡ଼ିଆଟାକୁ ଦେଖ- ରାଜନୈତିକ ନେତାମାନଙ୍କର ଅପାରଗତା ଯୋଗୁଁ ଓଡ଼ିଆ

ଅନେକ ପଛରେ, ଅକାରଣରେ ଅଭାଗା ହୋଇ ପଡିଛି''- ଯୁକ୍ତି କରି କରି କହିଲେ, ''ହାଇଦ୍ରାବାଦ ଦେଶ,କେତେଟା ଜାତୀୟ ପ୍ରତିଷ୍ଠାନ ସେଠି ରହିଛି ? ଓଡ଼ିଶାରେ ଭୁବନେଶ୍ୱରରେ କେତେଟା ଅଛି ?''

ସାର୍, ମୋତେ ଆହୁରି ବିସ୍ମୟାଭିଭୂତ କରି, କହିଲେ, ''ଓଡ଼ିଶାର ଆଜିସୁଦ୍ଧା ଜଣେ କେହି ଯୋଜନା ବୋର୍ଡର ସଭ୍ୟ ହୋଇଛି ? କୌଣସି ପବ୍ଲିକ୍ ସେକ୍ଟର ଅଣ୍ଡର ଟେକିଂର ଅଧକ୍ଷ ହୋଇଛି ? NCERT, NIEPA, NBT, ଆଡଭାନସ ଷ୍ଟଡି ଇନଷ୍ଟିଟ୍ୟୁଟ୍, କିମ୍ବା ICAR, ICMR, ICSSR, CSIR ଆଦିରେ ରହିଛି ? ରେଳବାଇ ବୋର୍ଡର ଅଧକ୍ଷ କି ସଦସ୍ୟ ରହିଛନ୍ତି । ୧୯୭୭ ପରେ ୟୁନିୟନ୍ ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ କି ତାହାର ସୃଷ୍ଟିକାଳରୁ କେହି ଜଣେ ଓଡ଼ିଆ ଅଧକ୍ଷ ହୋଇଛନ୍ତି ?

ଓଡ଼ିଶାର ଅଣରାଜନୈତିକ ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ରାଷ୍ଟ୍ରଦୂତ କି ରାଜ୍ୟପାଳ ହୋଇଛନ୍ତି କେବେ ? ୟୁଏନ୍ ଓ, ୟୁନେସ୍‌କୋ, WHO, କି UNICEF ର ଡେଲିଗେସନର ଦଳପତି ହୋଇଯାଇଛନ୍ତି, ରାଷ୍ଟ୍ରପତିଙ୍କର ରାଜ୍ୟସଭା ପାଇଁ ମନୋନୀତ ସଭ୍ୟଙ୍କ ଭିତରୁ କେହି ଜଣେ ହେଲେ, ଓଡ଼ିଆ ସଭ୍ୟ ମନୋନୀତ କେବେ ହୋଇଛନ୍ତି ? କିମ୍ବା କ୍ୟାବିନେଟ୍ ସେକ୍ରେଟାରୀ ବା CAGରେ କେବେ ଓଡ଼ିଆ ଜଣେ ରହିଛନ୍ତି ?

ଅଭିମାନ କରି ସାର୍ କହୁଥିଲେ, ତୁମ ବୋମାଇଙ୍କୁ ଓଡ଼ିଶାରୁ ରାଜ୍ୟସଭା ସଭ୍ୟ କରି ପଠାଇଲୁ ଓ ସେ ମାନବସମ୍ବଳ ମନ୍ତ୍ରୀ ହୋଇଛନ୍ତି (ଥିଲେ) ସିଏ ମାନବ ସମ୍ବଳ ବିଭାଗରେ ଜଣେ ଓଡ଼ିଆକୁ ରଖିପାରିଛନ୍ତି ? ସେତେବେଳେ ଯୁକ୍ତଫ୍ରଣ୍ଟର ସରକାରଥାଏ ଏବଂ କେନ୍ଦ୍ରରେ ଇନ୍ଦ୍ରଜିତ ଗୁପ୍ତ, ବିଧୁବାବୁଙ୍କୁ କହି, ଓଡ଼ିଆଙ୍କ ପାଇଁ, ତଥା ଓଡ଼ିଶା ପାଇଁ କିଛି କରିବାକୁ ସେ ମୋତେ ପରାମର୍ଶ ଦେଉଥିଲେ । ଏହି ମର୍ମରେ ସାର୍ ନୂଆଦିଲ୍ଲୀରୁ ମୋ ପାଖକୁ ଖଣ୍ଡେ ଚିଠି ଲେଖିଥିଲେ ।

---

ପ୍ରଫେସର ଦାସ, ଉଚ୍ଚଶିକ୍ଷା ବିଭାଗର ମଣିଷ । ଇଂରାଜୀରେ ପ୍ରବୀଣ ପ୍ରଫେସର । ଦକ୍ଷ ଶିକ୍ଷା ପ୍ରଶାସକ । ଅନେକ ହୁଏତ ଜାଣିନଥିବେ ଯେ ଓଡ଼ିଶାରେ ''ସମସ୍ତଙ୍କ ପାଇଁ ଶିକ୍ଷା'' ସବୁ ପିଲାଙ୍କୁ ବିଦ୍ୟାଳୟକୁ ଆଣିବା ପାଇଁ, ତାଙ୍କର ସୁଦୀର୍ଘ ଉଦ୍ୟମ ଭିତରେ, ଶେଷକୃତି ହେଉଛି, ଓଡ଼ିଶାରେ ପ୍ରାଥମିକ ଶିକ୍ଷା ସଂଯୋଜନା ଉପରେ ତାଙ୍କର, ପାଣ୍ଡିତ୍ୟ ଓ ବିଶ୍ଳେଷଣାତ୍ମକ ରିପୋର୍ଟ । ଦୁର୍ଭାଗ୍ୟଜନକ ଭାବରେ, ତାଙ୍କର ବହୁ ଆୟାସର ରିପୋର୍ଟଟି ଅମଲାତନ୍ତ୍ର ଓ ନିର୍ବୋଧ ରାଜନୀତିଜ୍ଞଙ୍କର

ଗଣ୍ଠିଭେଦ କରି ପ୍ରକାଶିତ ହେଲା ନାହିଁ କି କାର୍ଯ୍ୟକାରୀ ହେବନାହିଁ । ବିଦ୍ୟାଳୟ ସଂଖ୍ୟା ବୃଦ୍ଧି ପାଇଲା ପରେ, ପରିଦର୍ଶକମାନେ ସବୁ ବିଦ୍ୟାଳୟକୁ ସ୍ପର୍ଶ କରିବାମଧ ସମ୍ଭବ ନୁହେଁ - ପରିଦର୍ଶନ କରିବା ଦୂରର କଥା । ପ୍ରଫେସର ଦାସ, ଏକ ବିଦ୍ୟାଳୟ ପରିଦର୍ଶନ ସଂକ୍ରାନ୍ତରେ ସର୍ବଭାରତୀୟ କମିଟିର ଅଧ୍ୟକ୍ଷତା କରି, ଯେଉଁ ଅନୁମୋଦନ ଦେଇଥିଲେ, ତାହା ଅନ୍ତତଃ ଛଅଟି ପ୍ରଦେଶରେ କାର୍ଯ୍ୟକାରୀ ହେଉଥିବାର ମୋତେ ଜଣା । ଓଡ଼ିଶାରେ ସଂଭବତଃ ରିପୋର୍ଟଟି ଅନେକ ପଢ଼ିନଥିବେ କି ଜାଣି ନଥିବେ । ତାଙ୍କର ଅନୁମୋଦନ ଅତ୍ୟନ୍ତ ସହଜ ଓ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ସର୍କଲରେ ବିଭିନ୍ନ ବିଷୟରେ ପ୍ରବୀଣ ଶିକ୍ଷକମାନଙ୍କର ଏକ ତାଲିକା ପ୍ରସ୍ତୁତ ହୋଇ, ପରିଦର୍ଶକଙ୍କ ନିକଟରେ ରହିବ ଏବଂ ସେହି ଶିକ୍ଷକମାନଙ୍କୁ ବିଭିନ୍ନ ସମୟରେ, ଭିନ୍ନ ଭିନ୍ନ ବିଦ୍ୟାଳୟ ପରିଦର୍ଶନ କରିବାକୁ ପ୍ରଶିକ୍ଷଣ ପରିଦର୍ଶନ କରିବାକୁ ପଠାଯିବ । ସେମାନଙ୍କର ଅନୁମୋଦନ ଭିତ୍ତିରେ ପରିଦର୍ଶକ କାର୍ଯ୍ୟାନୁଷ୍ଠାନ କରିବେ । ଆଦିବାସୀ ପିଲାମାନଙ୍କୁ ପ୍ରଥମ ଦୁଇ ଦିନିବର୍ଷ ଅନ୍ତତଃ, ତାଙ୍କ ମାତୃଭାଷା (ଓଡ଼ିଆ ନୁହେଁ) ରେ ନ ପଢ଼ାଇଲେ, ସେମାନେ ପ୍ରାଥମିକ ବିଦ୍ୟାଳୟରେ ରହିବେ ନାହିଁ । ଡ୍ରପ୍ ଆଉଟ୍ ହୋଇଯିବେ ବୋଲି ତାଙ୍କର ମନ୍ତବ୍ୟ ଏଯାବତ୍ କାର୍ଯ୍ୟକାରୀ ହୋଇନାହିଁ ।

ଓଡ଼ିଶାରେ ଶିକ୍ଷା ସମ୍ପର୍କିତ ଯାବତୀୟ ସମସ୍ୟା, ଉପରେ ଶିକ୍ଷକ ମହାସଂଘ ପକ୍ଷରୁ ବହୁବାର ଆନ୍ଦୋଳନ ହୋଇଛି, ଏପରିକି, ଏକା ସମୟରେ ସାର୍ବଜନୀନ ପ୍ରାଥମିକ ଶିକ୍ଷାକୁ ସଫଳ କରିବା ପାଇଁ 'ଜ୍ଞାନଜ୍ୟୋତି' ପରିକ୍ରମା କରି ତିନିମାସ (ସେପ୍ଟେମ୍ବର ୫ତାରିଖରୁ, ନଭେମ୍ବର ତା ୧୪ରିଖ ପର୍ଯ୍ୟନ୍ତ) ଧରି ଓଡ଼ିଶାର ପାଞ୍ଚହଜାର କିଲୋମିଟର ପଦଯାତ୍ରା ଶିକ୍ଷକମାନେ କରିଛନ୍ତି, ଅପର ପକ୍ଷେ ଚାକିରିରେ ଧାରବାହିକତା ପାଇଁ, ଅନୁଦାନ ପାଇବା ପାଇଁ, ୟୁଜିସି ଦରମା ପାଇବା ପାଇଁ ଆନ୍ଦୋଳନ କରିଛନ୍ତି । ଶିକ୍ଷକ ମହାସଂଘ ବହୁ ଭାବରେ ନିନ୍ଦିତ ବି ହୋଇଛି । ଅଜସ୍ର ପ୍ରଶଂସା ମଧ୍ୟ ପାଇଛି । ପ୍ରଫେସର ଦାସ, ଶିକ୍ଷକ ମହାସଂଘର ଅଧିକାଂଶ ସମ୍ମିଳନୀରେ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଛନ୍ତି- ପରାମର୍ଶ ଦେଇଛନ୍ତି । ଶିକ୍ଷାର ସମଗ୍ର ଦିଗ ଉପରେ, ଶିକ୍ଷକ ମହାସଂଘ ବାହାରେ, ଶିକ୍ଷାବିତ୍‌ମାନଙ୍କୁ ନେଇ ଏକ ସଂଗଠନ ଗଢ଼ିତୋଳିବାକୁ ତାଙ୍କରି ପରାମର୍ଶ କ୍ରମେ 'ଜନଶିକ୍ଷା ସମିତି' ବା People's Education Forum ଗଠିତ ହୋଇଛି । ଆରମ୍ଭରୁ ପ୍ରଫେସର ଦାସ, ତାହାର ଅଧ୍ୟକ୍ଷ ଥିଲେ । ଆଉ ଅନୁଦାନ ନଦେବା ପାଇଁ, ୧୯୯୮ ମସିହାରେ ଶିକ୍ଷା ଆଇନ ସଂଶୋଧନ କରିବା ପାଇଁ ଏକ ବିଲ୍ ବିଧାନସଭାରେ ଆଗତ ହେଲାବେଳେ, ପ୍ରସ୍ତାବିତ ଆଇନଟିର ପ୍ରତ୍ୟେକ ଧାରା ଉପରେ, ଜନଶିକ୍ଷା ସମିତିରେ ଆଲୋଚନା କରାଯାଇ, ପ୍ରଫେସର ଦାସଙ୍କର ଅଭିମତକୁ ସାର, ନିର୍ଦ୍ଦେ କମିଟି ଆଗରେ ଉପସ୍ଥାପିତ କରିବାକୁ ପଠାଇଛନ୍ତି ।

ଅନେକଙ୍କୁ ମୁଁ କହିଥାଏ, ପ୍ରଫେସର ଦାସ ସଂଭବତଃ ଓଡ଼ିଶାର ସର୍ବଶେଷ ଶିକ୍ଷା ଡିରେକ୍ଟର, ଯିଏ ଶିକ୍ଷକର ଓ ଶିକ୍ଷାର ସ୍ୱାଭିମାନ କୁ ମର୍ଯ୍ୟାଦା ଦେଇ ଅମଲାତନ୍ତ୍ର ନିକଟରେ ନତମସ୍ତକ ହୋଇନାହାନ୍ତି । ସଚିବାଳୟର କରିଡରରେ ବୁଲିବୁଲି ଉପ, ଅନୁ ଶାସନ ସଚିବମାନଙ୍କ ନିକଟରେ ଶିକ୍ଷାର ଅର୍ଜି ପେଶ୍ କରିନାହାନ୍ତି । ଶିକ୍ଷା ନିର୍ଦ୍ଦେଶକ ପଦକୁ ନିଜର ସ୍ୱାଭିମାନ ବଳରେ ସେ ଉର୍ଦ୍ଧ୍ୱତର କରିଥିଲେ । ତାଙ୍କ ପରେ (କାହାରିକୁ ଅସମ୍ମାନିତ କରିବା ମୋର ଉଦ୍ଦେଶ୍ୟ ନୁହେଁ) ଶିକ୍ଷା ନିର୍ଦ୍ଦେଶକ ପଦଗୁଡିକ ଅମଲାତନ୍ତ୍ର ଦ୍ୱାରା, ବଳୀଙ୍କୁ ବାମନ ଚାପିଲା ପରି ହୋଇ ଯାଇଛନ୍ତି । ସଚିବାଳୟରେ ଅଧସ୍ତନ ହୋଇଯାଇଛନ୍ତି । ପରେ ପରେ ଶିକ୍ଷା ନିର୍ଦ୍ଦେଶକ ପଦଗୁଡିକ ଭାଗ ଭାଗ କରି ଅମଲାତନ୍ତ୍ରମାନେ ଦଖଲ କରିନେଇଛନ୍ତି ଓ କହି ବୁଲୁଛନ୍ତି, ଶିକ୍ଷକ, ଅଧ୍ୟାପକମାନେ ଏ ଉଚ୍ଚପଦରେ ରହି ପ୍ରଶାସକ ହେବା ପାଇଁ ଯୋଗ୍ୟ ନୁହଁନ୍ତି । ଆମେ ଶିକ୍ଷକମାନେ ତାହା ମାନିନେଇଛୁଁ ।

ସାର୍, ଜାଣିଛନ୍ତି ଅତୀତରେ ଶିକ୍ଷକ ଆନ୍ଦୋଳନ ବେଳେ ସାର୍‌ଙ୍କୁ ବହୁ ସମାଲୋଚନା ମଧ୍ୟ କରିଛି । ଯୁକ୍ତି ତର୍କ କରିଛି । ସାର୍‌ଙ୍କ କଥା ହୁଏତ ରହିନାହିଁ । ମୋ ଯୁକ୍ତି ରହିଛି କିନ୍ତୁ କେବେହେଲେ ସାର୍, ଏ ସମସ୍ତକୁ ପରାଜୟ ବୋଲି ନମାନି, ଶିକ୍ଷାର ଅଗ୍ରଗତିରେ ବିଜୟ ଭାବରେ ଗ୍ରହଣ କରି, ଅଜସ୍ର ଆର୍ଶୀବାଦ କରିଛନ୍ତି । ଏ ପ୍ରେରଣା ଦେଇଛନ୍ତି । ଆଗେଇ ଯିବାକୁ ଉତ୍ସାହ ଦେଇଛନ୍ତି ।

ଶିକ୍ଷକ ମହାସଂଘ ଓ ତାହାର ସାମିଲ ଲକ୍ଷ ଲକ୍ଷ ଶିକ୍ଷକ-ଶିକ୍ଷିକାଙ୍କ ପକ୍ଷରୁ, ସାର୍‌ଙ୍କର ଅମ୍ଳାନ ଓ ପ୍ରଚଣ୍ଡ ବ୍ୟକ୍ତିତ୍ୱ ପ୍ରତି ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ଓ ପ୍ରଣତି ଜଣାଉଛି । ସାର୍, କାଳଜୟୀ ହୁଅନ୍ତୁ ।

## FATHER ASLEEP
## June 2, 1999

My father's face glows
His skin, drops of shooting stars
His eyes, pearls shut in peace.

I will not try and wake you, father
For your sleep
Is serene, sought, cherished
A dense, midnight
Magic blue sleep.

Your Rodin hands
Fall like a cloud beside you.
Your body's sandal aroma
Precipitated in ice and incense.
The thatch-thick chiaroscuro of your hair
I comb back gently
Very very gently.

Your childhood smile
Strums your lips
In a *raga* of gentleness.
The avalanche of flowers you lie on
Hums its own rajanigandha
Rose and marigold breeze.

Father, this is your final sleep
Moksha is yours,
The kingdom of heaven, yours,
Shanti, forever yours.

**OOPALIE OPERAJITA**

# Professor Bidhu Bhusan Das :
# A Tribute to a Great Soul

If death is inevitable, then why do some deaths shake the very foundation of our being and why does all-pervading feeling of loss overpower us ? Some of Professor Das's numerous friends, admirers, well-wishers, former colleagues and students had this feeling when they heard of his unexpected death.

Professor Das was instrumental in instilling modern ideas and thought into a traditional society, to release it from the paralysing influence of the past. He was the leader of a group that launched a process of modernisation in the academic, literary and cultural fields, in the fifties. Whether it is in the field of restructuring the syllabus, or a new approach to the study of English literature and literary criticism, or a new orientation to Oriya poetry and drama, or educational reforms, they bore the imprint of his ideas. His death has created a void in the academic, social and cultural life of the state which cannot be filled for years to come.

I met Professor Das in 1938, when both of us were students in the 1st year class of Ravenshaw College. We left Ravenshaw in 1940 to join the B.A. Honours Class of Patna College. He took English Honours and I opted for Economics. We continued our studies in Patna College for the M.A.Course in English and Economics.

Here in Patna College the early contact grew into a deep and enduring friendship. We were staying either in adjointing hostels or adjacent rooms in the same hostel. We used to go to the college, to the library and the hostel

together. We used to take long walks on the Ganga riverside and made weekly visits to the shrine of Goddess Chandi located in Darbhanga Building close to Patna College. He was voracious reader and every week he would carry an armful of books from college library and return them after 3 to 4 days. He would finish all the books of a particular author even if only one or two of his books were prescribed for study. But he was not confined to books alone. He had time for other things like seeing good films in English, gathering information about art, music, dance and continental literature, and Western society. We would discuss philosophy, religion, politics and progress of the World War. But I would draw a blank, when he turned to other subjects.

How could a man do so many things in so little time ? It did not take much time to discover the main-spring of his towering and versatile personality. It was his deep religious and rich spiritual resources, his disciplined life and a balance vegetarian diet. He had a religious bent of mind from his very childhood and had started worshipping Goddess Durga when he came across an image of the goddess accidentally while bathing in the river. In the hostel, I had seen him getting early in the morning even in winter season and gathering flowers in bare body for his worship. He would spend nearly an hour reading the sacred text in praise of the Goddess, meditating on her and doing asans and pranayams. This continued throughout his life and wherever he went, even to U.S., he carried his box containing the image, the sacred books and puja materials. This heightened his mental faculties, developed concentration and provided clarity of thought and strong determination to achieve his goal.'

As a student, he had been extra-ordinarily brilliant. He was among the top five in the Matriculation and Intermediate examinations. He stood first in the English Honours

Examination and first class first in the M.A. Examination. In 1944 he joined Ravenshaw College as a lecturer in English. In 1947 he was awarded a government scholarship under the Post-Reconstruction and Development Scheme for Higher Studies in Education, as there was no scholarship for English. But he was assured that after completion of his M.A. degree in Education, he could proceed for higher studies in English. I was also awarded a scholarship for Economics. Both of us were asked to proceed to U.S. and we travelled in the same ship and reached U.S. in July 1947. He joined Columbia University and after obtaining his M.A. degree in Education with specialisation in teaching of English as a foreign language, he proceeded to England to join Oxford University for B.Litt. Degree. In 1950 as a matter of strange coincidence, we returned in the same boat to India and rejoined our posts in Ravenshaw College. In 1951, he became a Reader, in 1954 Postgraduate Professor of English. In 1958 he was selected by Government of India to join the Nepal Aid Mission as an Educational Advisor. There he helped the Nepalese Government. to establish the Tribhuban University and subsequently became Professor of English. In 1968 he came back to Orissa and joined as Principal, Ravenshaw College in July. In August 1968, he became D.P.I, Higher Education and after a brief interlude in the State Institute of Education continued as D.P.I. till 1981.

His was a many-splendoured personality, in whom were reconciled knowledge, devotion and action. He was not only a man of thought but also action. His pursuit of knowledge started early and continued till the last. He had a big personal library which contained latest books not only on literature, and fine arts, but also on Economics, Politics, Sociology, History, Psychology and Education.

He received national recognition as a great teacher. His lectures not only bore the mark of his profound scholarship

but were also laced with references to the latest authors and thoughts. His students greatly benefited from his lectures. They had open access to him. He helped and encouraged them to reach high level of scholastic distinction. He had an eye on talented students and carefully nurtured their latent faculties for achieving excellence in their fields of study. It is rare for a man of thought to be also a man of action. Professor Das was not only an intellectual of high order but also a great educational administrator. As D.P.I. he was responsible for taking several steps to tone up college administration and to improve the standard of teaching. He was also the Chairman of the 10+2 Implementation Committee which suggested measures for its introduction in the state. He also conducted Educational Surveys in Orissa on behalf of N.C.E.R.T. which provided data base for educational planning for the primary and secondary levels. He was nationally recognised as an expert on higher education and was deputed by Government. of India in 1971 to U.S. to study reforms in higher education. Though Professor Das appeared on the surface as a hard taskmaster who would not tolerate any laxity, insincerity and negligence in work, at heart he was generous, kind and sensitive to human suffering and pain. His justice was always tempered with mercy. His love for students was deep and he helped them in many ways to overcome their difficulties. He introduced free boardership in hostels to help poor and meritorious students.

Professor Das had a large number of acquaintances but few friends with whom he could freely communicate. By nature he was detached and reticent. He would not let others know about his problems, pains, sorrows and suffering.

After retirement, he remained equally busy. His services were required by many institutions and organisations within

and outside the state. He was associated with many literary, cultural, social and educational organisations in the state. He was also consulted by State Government on many issues and he gave his well-considered and wise advice.

Professor Das had a unique personality. He performed his duties in all spheres of life splendidly and departed with glory. It is we who feel his absence deeply. I have been indebted to him in many ways. I can only console myself by offering my humble tribute to the great and noble soul.

**Debendra Chandra Mishra**

# Bidhu Bhusan Das : A Beacon Light in the Darkest Hours is No More

He is no more. The man whom we revered, eulogised, and made no end of our adulation has now passed beyond all that and must be smiling indulgently as he always used to do at our childishness.

In fact, all of us were like children before him. He taught us, instructed us, berated us whenever such occasions arose, but all the while his great affection covered us like summer night's cool, and whenever we faulted, his two bright and penetrating eyes showed us what to do and how best to do it.

He always wanted perfection and never tolerated people who were half-hearted, or those who never wanted to rise to their excellence. That was the hallmark of his teaching.

He teaches and one feels as if window after window opens in the mind. And what one sees is beyond, into the vast open area of enlightenment and illumination.

He talks and one's mind is shaped, intelligence refined, sensibility upgraded and one comes to wonder why one could not see that before. The state of education worried him, the condition of the country made him sick, the loss of human dignity perplexed him all the time. When we used to gather at his place in the evenings thick with whispers and shadows, he used to speak in whispers, of loss and failure, of defeat and indifference. Was it despair ? Was it negation ? No, never, we never thought so.

His melancholy raised us from our stupor, gave us hope and strength, and living in an uncomprehending world, he helped us to comprehend the immense futillity around us.

He was a teacher whom generations of students remember fondly like a precious possession, an administrator whose integrity, goodness and liberality are cherished by his colleagues, a man of great knowledge, which was like an ocean and has nourished everybody, and a man of great wisdom, which was like a beacon light in the darkest hours of need and grief, and above all, a man of such personality that bathed everybody in its benignity.

Where is the end to human achievement ? asked the seer. Looking at Prof Bidhu Bhusan Das, one feels that is the end.

**J.M. Mohanty**
***The Indian Express***
***June 3, 1999***



## Professor B. Das : A Brief Life Sketch

Born on April 11, 1922 at Puri, Orissa, Professor B. Das was a senior educationist of the state. He was educated at Patna, Oxford Columbia and Harvard Universities. He joined Ravenshaw College as a Lecturer in English in 1944, became Reader in 1950 and Sonepur Professor in 1952. He was deputed by Ministry of External Affairs to Kathamandu in 1959 under the Colombo Plan as Professor of English at Tribhuban University. He was appointed a member of the Royal Commission of His Majesty's Government and reorganised higher education in Nepal. On his return from there, he went on deputation to Ranchi University as Principal of the University College and became treasurer of the University. In 1968 he became Principal of Ravenshaw College and the same year he was appointed the Director of Public Instruction. In 1971 he was deputed by Government of India to the Economic Development Institute of the World Bank in Washington for a course in the economics of education. In 1975 he became Director of the State Institute of Education, and in 1976 he again became the Director of Public Instruction. In 1977 he acted as the Vice-Chancellor of Utkal University. From 1982 to 1984 he was Professor of Education at North Eastern Hill University (Kohima Campus). From 1985 to 1987 he was Educational Advisor to the Government of Nagaland.

During his tenure as Director of Public Instruction (Higher Education) and Director, S.I.E., Professor Das had been appointed a member of Task Forces and Committee and Organisations, prominent among which were National Board of Adult Education, Asian Institute for Educational Planning and Administration, National Integration Samiti, Madhuri Saha

Committee for Reorganisation of Higher Secondary Education, Ram Mohan Ray Library Foundation, Indian Institute of Advanced Study. He was instrumental in the establishment of the following institutions in Orissa.

1. Institute of Physics, Bhubaneswar
2. Central Sanskrit Institute, Puri
3. Eastern Language Centre, Bhubaneswar
4. Orissa Institute of Social Science Research, Bhubaneswar
5. English Language Training Institute, Bhubaneswar
6. Text Book Bureau, Bhubaneswar
7. State Council of Educational Research and Training, Bhubaneswar.
8. Institute of Correspondence Course, Utkal University
9. State Library, Bhubaneswar
10. State Resource Centre, Angul
11. Survey of India, Bhubaneswar.

In 1971 he led a delegation of the Government of India to a UNESCO Conference in Colombo where he was elected the Vice-Chairman of the Conference.

Professor Das was associated with the Planning Commission, NCERT, U.G.C, I.C.S.S.R., National Book Trust and the National Institute for Educational Planning and Administration, Sahitya Akademi, Jnanpith Award Foundation, Central Film Certification Board, State Sahitya, Lalit Kala and Sangeet Natak Academies etc. He was associated with about 50 universities in various capacities.

Professor Das was the President of the All India English Teachers' Conference and the President of the all India Federation of College Teachers' Organisations Confer-

ences. He was the Chief Editor of the *Indian Journal of English Studies*, *The Orissa Education Journal* and *Sikshyalok* and Senior Editor of three books titled *Orissa: Past and Present*, *Eye of Orissa* and *Criticism : A Reader*. Under his supervision about twenty scholars have obtained Ph.D. and D.Litt. degrees in English and Education.

He was the Chairman of the jury for state film awards in 1992 and 1994 and Member of the jury for national film award in 1994 and Chairman of the Regional Office of the Central Board of Film Certification, Orissa. He was also member of the Board of Governors of the English Language Training Institute, a member of the Executive Board of the Bharatiya Vidya Bhawan at Bhubaneswar and an Advisor of the Vivekananda Kendra at Kanyakumari.

His translation of Gopinath Mohanty's "Amrutara Santana" is awaiting publication.

For his services to education and culture, Utkal University conferred Honorary D.Litt. degree on him in 1991.

Professor Das breathed his last on 2 June 1999.

